# ସତେଜତାର ଅନୁଭୂତି ପାଇଁ ପ୍ରେମ

ଆପଣଙ୍କ ମନପ୍ରାଣରେ କୋମଳ ସ୍ପର୍ଶ
ଛୁଆଁଇ ଦିଏ ଏହି ସାବୁନ...
ଏହାର ସୁଗନ୍ଧ ବହୁ ସମୟ ଧରି ଆପଣଙ୍କୁ ଘେରି ରହେ ।
ଅପୂର୍ବ ଏହାର ଫେଣ ଛନ ଛନ ହୋଇ ଭରି ଉଠେ ।
ଅଭ୍ୟାସ କରି ପ୍ରତିଦିନ ବ୍ୟବହାର କରନ୍ତୁ ପ୍ରେମ ।




ଗୋଲାପୀ ଓ
ସବୁଜ ରଙ୍ଗରେ
ଉପଲବ୍ଧ ।



ଜୟଲକ୍ଷ୍ମୀ
ଉତ୍ପାଦନ
କେନ୍ଦ୍ର

# ମାଲଟୋଭା ଦଳ
# କିଟ୍ଟି କରିଦେଲେ ଏକବାରେ ଚମତକାର

ଜାଲିଥିଲା ମିନିର ଜନ୍ମଦିନ । ପୁରା ଦଳଟା ଯାକ ତା ବଗିଚାରେ ବସିଯାଇ ମଉଜମଜଲିସ କଲେ, ମହାଖୁସିରେ ମାଲଟୋଭା ପିଇଲେ, କେକ ଯାହା ବଂଟିଯାଇଥିଲା ଆନନ୍ଦରେ ଖାଇଲେ । ସତରେ କି ଚମତକାର କେକ । ଚକଲେଟରେ ଭରପୁର, ପୁରାପୁରି କ୍ୟାଣ୍ଡଲରେ ସଜା । କି ମଜା ହେଲା "ରୁମାଲ ଚୋରି" ଖେଳରେ । ମିନିକୁ କି ସୁନ୍ଦର ସୁନ୍ଦର ପ୍ରେଜେଣ୍ଟସବୁ ମିଳିଲା । ଆଉ କେତେ । ମିନିର ଜନ୍ମଦିନ ଅଥଚ ସେ ଚୁପଚାପ ହୋଇ ବସିଥାଏ ।

## "କଥା କଣ, ମିନ ?"

"ବାବୁ, ଅନାଥାଶ୍ରମର ଧୀରୁ ନୁହେଁ, ମମୀ ତାକୁ କାଲି ଖାଇବାକୁ ଡାକିଥିଲା । ସେ କେବେ ଜନ୍ମଦିନ ପାର୍ଟିକୁ ଯାଇନି । ଅନାଥାଶ୍ରମରେ ଜନ୍ମଦିନ କେବେ ମନାନ୍ତି ନାହିଁ । ତାର ଏଇ ଶନିବାର ଦିନ ଜନ୍ମଦିନ ।" ମିନି ଆଖିରୁ ବଡ଼ ବଡ଼ ଦି ଠୋପା ଲୁହ ଗଡ଼ିଗଡ଼ିଲା । କାହାରି ମୁହଁରେ କଥା ନାହିଁ । ଧୀରୁକୁ ସମସ୍ତେ ଜାଣନ୍ତି, ଭଲ ପାନ୍ତି । କିନ୍ତୁ ସେ ପିଲାଟି ମୁହଁରେ କେହି କେବେ ହସ ଦେଖି ନାହାନ୍ତି ।

## ସଲିମ ଏକ ବୁଦ୍ଧି ପାଇଲା…

ମୁରୁକେଇ ହସି ସଲିମ କହିପଡ଼ିଲା । କେମିତି ହେବ ଧୀରୁ ପାଇଁ ଯଦି ଗୋଟାଏ ଚମକଦାର ପାର୍ଟି କରଯାଏ । ସମସ୍ତେ କହିଲେ ସତରେ ବଢ଼ିଆ ବୁଦ୍ଧି । ବାବୁ ତା ପକେଟ ମନିରୁ କିଛି ଟଙ୍କା ବଂଚେଇ ରଖିଛି । ସେତକ ସେ ଦେବ । ବେଣୁ କହିଲା ତା ମା' କେକ ତିଆରି କରିଦେବେ । ମାଳତି କହିଲା ସେ ନିଜ ଆଡୁ କିଛି କରିବ । ମିନି ତା ପ୍ରେଜେଣ୍ଟରୁ କିଛି ଦେବ ବୋଲି କହିଲା । ଦଳଟା ଯାକଙ୍କ କି ଉତ୍ସାହ । ଏଇଟା ତାଙ୍କର ବଡ଼ ମଜାଦାର ଗୋପନ କଥା ।

## ଧୀରୁ ପାଇଁ ଏକ ବିସ୍ମୟ !

ଶନିବାର ଦିନ ଧୀରୁକୁ ନିମନ୍ତ୍ରଣ କରାଗଲା ସଲିମ ଘରକୁ । କେହି ତାକୁ ଶୁଭେଚ୍ଛା ଜଣେଇ ନ ଥିଲେ, ତେଣୁ ସେ ବଡ଼ ବିଷଣ୍ଣ ହୋଇପଡ଼ିଥିଲା । ସେ ଦରଜା ଠେଲିଲା — ଦରଜା ଖୋଲା ଥିଲା । "କେହି ଅଛନ୍ତି ?" ଘର ଅଂଧାର । ହଠାତ ଆଲୁଅ ଜଳି ଉଠିଲ ଓ ସମସ୍ତେ ଗାଇ ଉଠିଲେ; 'ହ୍ୟାପି ବାର୍ଥଡେ' — ଧୀରୁର ଅନାଥାଶ୍ରମର ସାଙ୍ଗସବୁ ଓ ମାଲଟୋଭା ଦଳ । ଟେବୁଲ ଉପରେ ଥୁଆ ହୋଇଥିଲା ନାଲି ଓ ଧଳା ରଙ୍ଗର ଗୋଟାଏ ବଡ଼ କେକ୍ । ଚାରିଆଡ଼େ ବେଲୁନ ଝୁଲୁଥାଏ ଆଉ ଧୁଆଁ ଉଠୁଥାଏ ଗରମ ଗରମ ମାଲଟୋଭା କପରୁ । ପ୍ରେଜେଣ୍ଟ ବି ଥୁଆ ହୋଇଥାଏ । ସତରେ ଧୀରୁ ପାଇଁ ଏକ ବିରାଟ ପାର୍ଟି ! କାରଣ ତାର ଆଖିରେ ଲୁହ ଭରିଯାଇ ଥିଲା ସତ, କିନ୍ତୁ ମୁହଁରେ ଥିଲା ଏକ ଖୋଲା ହସ !

## ମାଲଟୋଭାହିଁ ପାର୍ଥକ୍ୟ ଆଣିଦିଏ

ବାସ୍ତବିକ, ମାଲଟୋଭା ପିଉଥିବା ପିଲାମାନେହିଁ ପିଅନ୍ତି ଜୀବନର ସାର ଜିନିଷ ଯାହାକି ଅପରିହାର୍ଯ୍ୟ । କାରଣ ପ୍ରତିଟି କପ ମାଲଟୋଭାରେ ରହିଛି ସୁନେଲି ଗହମ, ବାର୍ଲି, ଖାଣ୍ଟି ଦୁଧ, ସମୃଦ୍ଧ କୋକୋ ଓ ଚିନିର ସବୁ ଭଲ ଗୁଣ । ଏହା ଶରୀରରେ ଅଧିକ ଭଲଭାବେ ପ୍ରତିରୋଧକ ଶକ୍ତି ଗଢ଼ି ତୋଳେ । ବେଶୀ ଶକ୍ତି ଦିଏ, ବେଶୀ ଷ୍ଟାମିନା ଦିଏ । ଆପଣଙ୍କ ପିଲାମାନଙ୍କୁ ଦିଅନ୍ତୁ ମାଲଟୋଭା । ଆପଣ ଦେଖିବେ ଆପଣଙ୍କ ଆଗରେ ସେମାନେ ବଢ଼ି ଚାଲିଛନ୍ତି ସୁସ୍ଥ, ସବଳ ହୋଇ । ମାଲଟୋଭା ଆପଣଙ୍କ ପିଲାମାନଙ୍କୁ ସବୁବେଳେ ପ୍ରାଣୋଚ୍ଛଳ କରି ରଖେ ।

## ମାଲଟୋଭା କ୍ଲବରେ ଯୋଗ ଦିଅନ୍ତୁ

ଏହା ଅତି ସହଜ । ଆପଣ ଏତିକି କରନ୍ତୁ— ୩ଟି ୫୦୦ ଗ୍ରାମ ଜାରର ଲେବଲ ଓ ଭିତର ସୀଲ କିମ୍ବା ତିନୋଟି ୫୦୦ ଗ୍ରାମ ରିଫିଲ ପ୍ୟାକର ଉପର ଫ୍ଲାପ ପଠାନ୍ତୁ ଏହି ଠିକଣାରେ – ଦି ମାଲଟୋଭା କ୍ଲବ, ୪ ମହଲା, ଭଣ୍ଡାରୀ ହାଉସ, ୯୧, ନେହରୁ ପ୍ଲେସ, ନୂଆ ଦିଲ୍ଲୀ ୧୧୦ ୦୧୯ ।

ଆଉ ଆପଣ ହୋଇଗଲେ ଦଳର !




JIL ଜଗତଜୀତ ଇଣ୍ଡଷ୍ଟ୍ରୀଜ ଲିମିଟେଡ

## ଭିଟାମିନରେ ଭରପୁର ମାଲଟୋଭା: ସ୍ୱାସ୍ଥ୍ୟ, ବଳ ଓ ଶକ୍ତିଦାୟକ

SIMOES/JIL/002/85 ORI



# ଚନ୍ଦ୍ରମାମୁଁ

ଜୁନ୍ ୧୯୮୫



## ବିଷୟ-ସୂଚୀ






ପ୍ରତି ସଂଖ୍ୟା : ୨-୦୦

ବାର୍ଷିକ ମୂଲ୍ୟ : ୨୪-୦୦

ଆପଣଙ୍କ କେଶ
ଆବଶ୍ୟକ କରେ

# ରୀଠାର ଯତ୍ନ

ରୀଠା ଏକ ଉତ୍କୃଷ୍ଟ କେଶ ପ୍ରସାଧନ ସାମଗ୍ରୀ ଅତ୍ୟଧିକ ମାତ୍ରାର ନିର୍ଯ୍ୟାସରେ ପ୍ରସ୍ତୁତ ଓ ମନମତାଣିଆ ସୁଗନ୍ଧଯୁକ୍ତ । ଏହା ବଳାସମସ୍ତୀ ପ୍ରାକୃତିକ କେଶ ବଢ଼ାଇବା ଓ ମସ୍ତିଷ୍କ ଥଣ୍ଡା କରିବା ନିଶ୍ଚିତ । ରୀଠା ପୁରୁଷ ଓ ମହିଳା ଉଭୟଙ୍କ ପାଇଁ ଏକ ଆଦର୍ଶ ପ୍ରସାଧନ ଦ୍ରବ୍ୟ ।







ରୀଠା ମନୋହର କେଶ ବଢ଼ାଏ
ଆଜି ଏକ ବୋତଲ କିଣନ୍ତୁ
ସବୁଠାରେ କିଣିବାକୁ ମିଳୁଛି

ଭେଟୋ କୋ:, ବମ୍ବେ * କଲିକତା * ମାଦ୍ରାଜ

# ଚନ୍ଦ୍ରମାମୁଁ

ସଂସ୍ଥାପକ : 'ଚକ୍ରପାଣୀ'

ସଂଚାଳକ : ନାଗି ରେଡ୍ଡୀ

---

ଏ ସଂଖ୍ୟାର ବିଶେଷ ଆକର୍ଷଣ ହେଲ ଦେବପ୍ରିୟଙ୍କ ଲିଖିତ କାହାଣୀ "ଅଭିଶପ୍ତ ଉପତ୍ୟକା"। ଯାହାର ଉଦ୍ଦେଶ୍ୟ ମନ୍ଦ, ତାଙ୍କୁ ଦୈବୀ ଶକ୍ତି ସାହାଯ୍ୟ କରେ ନାହିଁ, ସାହାଯ୍ୟ କରେ ମନ୍ଦ ଶକ୍ତି। ଏହାର ପରିଣତି କଦାପି ଭଲ ହୁଏ ନାହିଁ।

## ଅମରବାଣୀ

ପରୋପଦେଶ ପାଣ୍ଡିତ୍ୟେ ଶିଷ୍ଟାଃ ସର୍ବେ ଭବନ୍ତି ବୈ।
ବିସ୍ମରନ୍ତୀହ ଶିଷ୍ଟତ୍ୱଂ ସ୍ୱକାର୍ଯ୍ୟେ ସମୁପସ୍ଥିତେ॥

[ଅନ୍ୟଙ୍କୁ ଉପଦେଶ ଦେଲାବେଳେ ସମସ୍ତେ ପାଣ୍ଡିତ୍ୟପୂର୍ଣ୍ଣ ଶିଷ୍ଟ କଥା କହିପାରନ୍ତି। କିନ୍ତୁ ନିଜ ଜୀବନରେ ସେ ଶିଷ୍ଟତା ଭୁଲିଯା'ନ୍ତି।]

---

ବର୍ଷ : ୫ ଜୁନ୍ ୧୯୮୪ ଅଙ୍କ : ୧୨

ପ୍ରତିସଂଖ୍ୟା : ଟ. ୨-୦୦ :: ବାର୍ଷିକ ମୂଲ୍ୟ : ଟ. ୨୪-୦୦



## ଜହ୍ନମାମୁଁ ସମ୍ବାଦ-ବିଚିତ୍ରା



### ଇନ୍ଦିରାଙ୍କ ପ୍ରତିମୂର୍ତ୍ତି

ଆମେରିକାରେ ଥିବା 'ଷ୍ଟାଚ୍ୟୁ ଅଫ୍ ଲିବର୍ଟି' ଭଳି ବୋମ୍ବେର ସମୁଦ୍ର କୂଳରେ ଶ୍ରୀମତୀ ଇନ୍ଦିରା ଗାନ୍ଧୀଙ୍କର ଏକ ବିଶାଳ ପ୍ରତିମୂର୍ତ୍ତି ସ୍ଥାପନର ବ୍ୟବସ୍ଥା ହେଉଛି । ଏ ଦିଗରେ କେତେଜଣ ଉତ୍ସାହୀ ଶିଳ୍ପୋଦ୍ୟୋଗୀ ପ୍ରାଥମିକ ଯୋଜନା ପ୍ରସ୍ତୁତ କରିଛନ୍ତି ।

### ପଞ୍ଚାଶି ବର୍ଷର ଯୁବକ

ଉତ୍ତର କେନିଆର ଗୋଟିଏ ପଡ଼ିଆରେ ମାର୍ଜିଆ କିଠୋକ୍ସିଠା ନାମକ ପଞ୍ଚାଶି ବର୍ଷର ଜଣେ ଗ୍ରାମବାସୀ ତା' ପଶୁପଲ ଚରାଉ-ଥିଲା । ହଠାତ୍ ସେ ଦେଶର ଗୋଟାଏ ଭୀଷଣ ବଣ୍ୟ ମଇଁଷି ବଣ ଭିତରୁ ବାହାରି ଆସି ତାକୁ ଆକ୍ରମଣ କଲା । ଗ୍ରାମବାସୀଟି ତା' ଶିଙ୍ଘ ଦୁଇଟି ଧରି ପକାଇ ଘଣ୍ଟାଏ କାଳ ତାକୁ ଜବଦରେ ରଖିଲା । ଅବଶେଷରେ କୌଣସି ମତେ ନିଜକୁ ଖସାଇ ନେଇ ଜନ୍ତୁଟି ପଳାଇ ଗଲା ।





### ଆନ୍ତର୍ଜାତିକ ବୌଦ୍ଧମେଳା

ବୁଦ୍ଧଦେବଙ୍କ ଜନ୍ମସ୍ଥାନ ଲୁମ୍ବିନୀଠାରେ ତାଙ୍କ ଜୀବନ ଓ ବାଣୀ ସମ୍ବଳିତ ଗୋଟିଏ ସବୁଦିନିଆ ପ୍ରଦର୍ଶନୀ ସ୍ଥାପନର ବ୍ୟବସ୍ଥା ହେଉଛି । ଭାରତ-ନେପାଳ ସୀମାନ୍ତବର୍ତ୍ତୀ ଏହି ଉଦ୍ୟୋଗ ନିମନ୍ତେ ଭାରତ ତିନିକୋଟି ଟଙ୍କା ଯୋଗାଇ ଦେବ ।

## ଜାଣନ୍ତି କି ?

୧. ଚନ୍ଦ୍ରଗୁପ୍ତ ମୌର୍ଯ୍ୟଙ୍କ ଦରବାରରେ ଥିବା ଗ୍ରୀକ୍ ରାଜଦୂତଙ୍କ ନାମ କ'ଣ ?

୨. ପଲାସୀ ଯୁଦ୍ଧ କେବେ ଓ କାହା କାହା ଭିତରେ ହୋଇଥିଲା ?

୩. 'ଗେଟୱେ ଅଫ୍ ଇଣ୍ଡିଆ' କାହା ସମ୍ମାନାର୍ଥେ ନିର୍ମିତ ହୋଇଥିଲା ?

୪. ମହାରାଣା ପ୍ରତାପଙ୍କ ଘୋଡ଼ାର ନାମ କ'ଣ ଥିଲା ?

୫. ପୃଥିବୀର ପ୍ରଥମ ଆଧୁନିକ ଗଣତାନ୍ତ୍ରିକ ରାଷ୍ଟ୍ରର ନାମ କ'ଣ ?

(୬୪ ପୃଷ୍ଠାରେ ଉତ୍ତର ଦେଖନ୍ତୁ)



# କାହାର ଶିକ୍ଷାଲାଭ ?

ରମେଶ ଘୋର ଚଗଲା । ତା' ବାପା ତାକୁ ଯେତେ ପ୍ରକାରେ ପାଠ ପଢ଼ାଇବାକୁ ଚେଷ୍ଟା କଲେ, ହେଲା ନାହିଁ । ଗାଁଠାରୁ କେଇ କୋଶ ଦୂରରେ ଜଣେ ବିଶିଷ୍ଟ ପଣ୍ଡିତ ରହୁଥିଲେ । ପାଠ ଶିଖାଇବାରେ ତାଙ୍କ ଭଳି ଦକ୍ଷ ଶିକ୍ଷକ ରାଜ୍ୟ ଯାକରେ କେହି ନଥିଲେ ବୋଲି ଲୋକେ କହୁଥାନ୍ତି । ତାଙ୍କ ନାମ କଲ୍ୟାଣ ମିଶ୍ର । ରମେଶକୁ ନେଇ ତା' ବାପା କଲ୍ୟାଣ ମିଶ୍ରଙ୍କ ପାଖରେ ପହଞ୍ଚିଲେ ଓ ସବୁ ହାଲ୍ ଶୁଣାଇଲେ ।

ପଣ୍ଡିତେ କହିଲେ, "ଠିକ୍ ଅଛି । ମୋ ପାଖରେ ରମେଶକୁ ଛାଡିଦିଅ । ବର୍ଷେ ସମୟ ଦିଅ । ମୁଁ ତାକୁ ଲେଖାପଢ଼ା ଶିଖାଇ ଦେବ ।"

ଖୁସି ହୋଇ ରମେଶକୁ ସେଠି ଛାଡି ବାପା ବିଦାୟ ନେଲେ । ପଣ୍ଡିତ ରମେଶକୁ ଗୋରୁ-ଗାଈଙ୍କ ଚରାଇନେବା କାମରେ ଲଗାଇ ଦେଲେ । ସାରାଦିନ ରମେଶ ଭଲ ଭାବରେ କାମ କଲା । ସନ୍ଧ୍ୟାବେଳକୁ ପଣ୍ଡିତେ କହିଲେ, "ବାପା! ସିଲଟ୍ ଖଡି ଧରି ବସ । ବହୁତ ପରିଶ୍ରମ କଲଣି । ଟିକେ ଆରାମରେ ଅକ୍ଷର ଶିଖ ।"

"ଗୁରୁଜୀ ! ଅକ୍ଷର ଶିଖିବାରେ ଆରାମ କ'ଣ ? ମୁଁ କାମଦାମ କରିବି । ଯେତେଇଚ୍ଛା କାମ ଦିଅନ୍ତୁ ।" ରମେଶ ବିନା ସଙ୍କୋଚରେ କହିଲା ।

ଆହୁରି ଚାରି ପାଞ୍ଚଦିନ ଗଲା । ପଣ୍ଡିତେ ଭାବୁଥାନ୍ତି, କାମଦାମ କରି ହାଲିଆ ହୋଇଗଲେ ସେଥିରୁ ନିସ୍ତାର ପାଇବା ନିମନ୍ତେ ଅନ୍ତତଃ ରମେଶ ପାଠ ପଢ଼ାରେ ମନ ଦେବ । କିନ୍ତୁ ସେଭଳି କୌଣସି ଲକ୍ଷଣ ଦେଖାଗଲା ନାହିଁ ।

ପଣ୍ଡିତ ତାକୁ ଡାକି କହିଲେ, "ଦେଖ ବାପା, ପବନରେ ଉଡ଼ିବା ସମ୍ଭବ । ପାଣି ଉପରେ ଚାଲିବା ମଧ୍ୟ ସମ୍ଭବ । ତୁ ସେସବୁ ଶିଖିବୁ ?"

"ତସୂଧର"



"ହଁ, ହଁ । ଖୁବ୍ ମଜା ହେବ । ଶିଖାଇ ଦିଅନ୍ତୁ ।" ରମେଶ ଉତ୍ସାହରେ କହିଲା ।

"ବେଶ୍ ଭଲ କଥା । କିନ୍ତୁ ସେପାଇଁ ପ୍ରଥମେ ଅକ୍ଷର ଶିଖିବା ଆବଶ୍ୟକ ।"

ପଣ୍ଡିତଙ୍କଠୁଁ ଏକଥା ଶୁଣି ରମେଶ ସିଲଟ ଖଡ଼ି ଧରିଲା । ସାରା ଦିନ 'ଅ' ଉପରେ ଗାର ବୁଲାଇବା ସତ୍ତ୍ୱେ ନିଜେ କେବଳ ଅଧା 'ଅ' ଲେଖି ପାରିଲା । ସନ୍ଧ୍ୟା ବେଳକୁ କହିଲା, "ଗୁରୁଜୀ, ଯେତକ ଶିଖିଲିଣି, ସେତକରେ ସେ ଆମ୍ବଗଛ ଉପରକୁ ଉଡ଼ିଯାଇ ଆମ୍ବ ତୋଳି ପାରିବ ?"

"ନା, ନା । ବହୁତ ବେଶି ଶିଖିବାକୁ ହେବ ।" ପଣ୍ଡିତେ ଗମ୍ଭୀର ହୋଇ କହିଲେ ।

"ଆଚ୍ଛା ଗୁରୁଜୀ, ଆପଣ ତ ବହୁତ କିଛି ବିଦ୍ୟା ଶିଖିଛନ୍ତି । ଥରେ ଆପଣ ଉଡ଼ିଲେ ଦେଖିବା !"

ପଣ୍ଡିତେ ବଡ଼ ଅଡୁଆରେ ପଡ଼ିଲେ ଓ କହିଲେ, "ବୋକା ! ମୁଁ କ'ଣ ସତରେ ଉଡ଼ିବା କଥା କହୁଥିଲି ? ମୁଁ ଜ୍ଞାନ-ଆକାଶରେ ବିଚରଣ କରିବା କଥା କହୁଥିଲି ; ଜ୍ଞାନ ସମୁଦ୍ର ଉପରେ ଚାଲିବା କଥା କହୁଥିଲି !"

"ମୋର ଆଜ୍ଞା ସେସବୁରେ କ'ଣ ପ୍ରୟୋଜନ !" କହିଲା ରମେଶ ।

ସେତେବେଳେ ଗୋଟାଏ ପାଞ୍ଚବର୍ଷର ଶିଶୁ ପଣ୍ଡିତଙ୍କ ପାଖରେ ବସି ଅକ୍ଷର ଶିଖୁଥାଏ । ପଣ୍ଡିତେ ରମେଶକୁ କହିଲେ, "ହତଭାଗା ! ଦେଖ, ଏ ପାଞ୍ଚବର୍ଷର ଶିଶୁ କିପରି ବର୍ଣ୍ଣମାଳା ଶିଖି ଗଲାଣି ! ତୁ ପାରୁ ନାହୁଁ ।"

"ଗୁରୁଜୀ ! ମୋତେ ସିନା ପାଞ୍ଚବର୍ଷ ହୋଇଥିଲେ ମୁଁ ପାରନ୍ତି ! ମୋତେ ତ ବାର ବର୍ଷ ।"

"ବୁଦ୍ଧୁ ! ଅକ୍ଷର ଶିଖିବା ପାଇଁ ବୟସ କମ୍ ହେବା ଦରକାର ନାହିଁ । ଗୋଟାଏ ଯୁବକକୁ ଡାକି ଆଣ । ତାକୁ ବି ଶିଖାଇ ଦେବ ।" ପଣ୍ଡିତ କହିଲେ ।

ରମେଶ ଜଣେ କୋଡ଼ିଏ ବର୍ଷର ଯୁବକକୁ ଡାକି ଆଣିଲା । ଘଣ୍ଟାକ ଭିତରେ ପଣ୍ଡିତେ ତାକୁ କେତୋଟି ଅକ୍ଷର ଶିଖାଇ ଦେଲେ । ରମେଶ କହିଲା, "ଦେଖନ୍ତୁ, ଏହାର ବୟସ

ଚୋଡ଼ଏ ବର୍ଷ ହୋଇ ଇଏ ଶିଖି ପାରିଲ ! ମୋତେ ଯେତେବେଳେ ଚୋଡ଼ଏ ବର୍ଷ ହେବ, ମୁଁ ବି ଶିଖି ଯିବି !"

"ପୃଥି ହୋଇମି ବାହାର କଲ୍ ! ତୋ ବୟସର ପିଲାଏଁ ଅକ୍ଷର ଶିକ୍ଷିବାରେ ବାଧା କ'ଣ ?" ପଣ୍ଡିତ ପଚାରିଲେ ଓ କହିଲେ, "ରହ, ତୋ ବୟସର ଗଣ୍ଡାଏ ପିଲାଙ୍କୁ ତୋ ଆଗରେ ଅକ୍ଷର ଶିଖାଇ ଦେଉଛି ।"

ଏହା କହି ପଣ୍ଡିତେ ବାର ବରଷର କେତୋଟି ପିଲାଙ୍କୁ ଖୋଜିବାକୁ ବାହାରିଗଲେ । କିନ୍ତୁ ସେ ବୟସର ସବୁ ପିଲେ ଅକ୍ଷର ଶିଖି ଯାଇଥିଲେ । ତେଣୁ ସେ ତାଙ୍କ କଥା ପ୍ରମାଣ କରିବାର ସୁଯୋଗ ପାଇଲେ ନାହିଁ ।

"ଶୁଣ ରମେଶ, ସମସ୍ତେ ଲେଖା ପଢ଼ା ଶିଖିଥିବେ, ତୁ ଶିଖିବୁ ନାହିଁ । ଏଥିରେ ତୋତେ ଅପମାନ ଲାଗିବ ନାହିଁ ?" ପଣ୍ଡିତ ଏଥର ଅନ୍ୟ ଉପାୟରେ ରମେଶ ଭିତରେ ପାଠ ପ୍ରତି ଆଗ୍ରହ ସୃଷ୍ଟି କରିବାର ଚେଷ୍ଟା କଲେ ।

"ନାହିଁ ଆଜ୍ଞା, ମୋତେ ଅପମାନ ଲାଗିବ ନାହିଁ । ସେଦିନ ଲୋକେ କହୁଥିଲେ ଏ ପଣ୍ଡିତଙ୍କୁ ଖାଲି ପାଠଶାଠ ଛଡ଼ା ଆଉ କିଛି ଆସେ ନାହିଁ । ସେଥିରେ କ'ଣ ଆପଣଙ୍କର ଅପମାନ ହେଲା ? ସେମିତି ଲୋକେ କହିବେ ରମେଶକୁ କାମଦାମ ଛଡ଼ା ଆଉ କିଛି ଆସେ ନାହିଁ । ମୋର ଅପମାନ ହେବ କାହିଁକି ?"



ରମେଶର ଏ ଉତ୍ତର ଉପରେ ପଣ୍ଡିତେ କି ଜବାବ୍ ଦେବେ ଠିକ୍ କରି ପାରିଲେ ନାହିଁ । ସେ ରାଗିଯାଇ କହିଲେ, "ଶୁଣ, ତୁ ଅକ୍ଷରମାଳ ଶିଖି ନ ପାରିଲେ ମାଡ଼ ଖାଇବୁ !"

"ଗୁରୁଜୀ ! ମୁଁ ସିନା ପାଠରେ ଭୁଲ୍ କଲେ ମାଡ଼ ଦେବେ ! ମୁଁ ତ ଜମାରୁ ପାଠ ଜାଣେ ନାହିଁ । ମାଡ଼ ଦେବେ କାହିଁକି ? ମୋତେ ପାଠ ପଢ଼ାଇବା ଭଳି ଓସ୍ତାଦ୍ ଗୁରୁ ନାହାନ୍ତି । ସେଥିରେ ମୋର ଭୁଲ୍ କ'ଣ ?" ରମେଶ ଧୀର ସ୍ଥିର ସ୍ୱରରେ କହିଲା ।

ପଣ୍ଡିତ ସ୍ତମ୍ଭିଭୂତ ହୋଇ ରହିଲେ । ତା'ପରେ କହିଲେ, "ବାପା ଶିକ୍ଷା ଲାଭ ସମାପ୍ତ ହେଲା । ତୁ ଯାଇ ପାରୁ ।"

ରମେଶ ଖୁସି ହୋଇ ଘରକୁ ଚାଲିଗଲା । ପରଦିନ ତା' ବାପା ଆସି ପଣ୍ଡିତଙ୍କ ପାଖରେ ପହଞ୍ଚିଲେ ଓ କହିଲେ, "ଆଜ୍ଞା, ପିଲାଟାକୁ ପଠାଇଦେଲେ କାହିଁକି ? ସେ ତ ଗୋଟାଏ ବି ଅକ୍ଷର ଶିଖି ନାହିଁ । ଶିକ୍ଷାଲାଭ ସମାପ୍ତ ହେଲା କପରି ?"

"ବାବୁ, ତା' ଶିକ୍ଷା ଲାଭ ସମାପ୍ତ ବୋଲି ମୁଁ କହୁନାହିଁ, ମୋ ଶିକ୍ଷାଲାଭ ସମାପ୍ତ ହେଲା । ସେ ମୋତେ ଯେତକ ଶିକ୍ଷା ଦେବାର, ଦେଇଛି । ମୁଁ ଆଉ କିଛି କରିପାରିବି ନାହିଁ ।" ପଣ୍ଡିତ କହିଲେ । ରମେଶର ବାପା ଫେରିଗଲେ ।

ରମେଶ ଜମିଜମା କାମରେ ହାତ ଦେଲା । ଖୁବ୍ ଶୀଘ୍ର ସେ ଉନ୍ନତି କରିବାକୁ ଲାଗିଲା । ସେ ସବୁ ଏବଂ ସବୁ କାମ ନିଷ୍ଠା ସହକାରେ କରୁଥାଏ । ତାକୁ ଯେତେବେଳେ ମାତ୍ର କୋଡ଼ିଏ ବର୍ଷ ବୟସ, ସେତେବେଳକୁ ସେ କିଛି ଅଧିକା ଜମିଜମା ବି କରିବାକୁ ସମର୍ଥ ହେଲାଣି !

ସମୟ ଗଡି ଚାଲିଲା ।

ସେତେବେଳକୁ ସେ ଅନୁଭବ କଲା କି ଟିକିଏ ଲେଖାପଢ଼ା ଶିଖିଲେ ବହୁତ ସୁବିଧା ହେବ । ସେ ଯାଇ ପଣ୍ଡିତ କଲ୍ୟାଣ ମିଶ୍ରଙ୍କ ପାଖରେ ପହଞ୍ଚିଲା ଓ ଛଅମାସ ଭିତରେ ବେଶ୍ କିଛି ଲେଖାପଢ଼ା ଶିଖିଗଲା ।

ସେ ହସି ହସି ଦିନେ କହିଲା, "ଗୁରୁଜୀ ! ଆପଣଙ୍କୁ ମୁଁ କହୁଥିଲି ଟି, ଜଣେ ପାଞ୍ଚବର୍ଷରେ ଶିଖେ ନ ହେଲେ କୋଡିଏ ବର୍ଷରେ ଶିଖେ !"

"ହଁ ବାପା, ତୁ ଠିକ୍ କହୁଥିଲୁ ।" ପଣ୍ଡିତେ କହିଲେ । "ଯେଯାଏ ତୁ ନିଜେ ଇଚ୍ଛା କରୁ ନଥିଲୁ, ସେଯାଏ କେହି ତୋତେ ଶିଖାଇ ପାରୁ ନଥିଲେ । ଯେତେବେଳେ ତୁ ଇଚ୍ଛା କଲୁ, ଛଅ ମାସରେ ଦୁଇ ବର୍ଷର ପାଠ ଶିଖିଗଲୁ । ତୋଠୁଁ ମୁଁ ଏହି ଶିକ୍ଷାଲାଭ କଲି ଯେ ମଣିଷ ନିଜେ ଇଚ୍ଛା ନକଲେ କେହି ତା'କୁ ଜ୍ଞାନ ଦେଇ ପାରେନାହିଁ !"






[ ୬.]

[ଚନ୍ଦ୍ରବର୍ମା ଶତ୍ରୁ ବାହିନୀର ମୁକାବିଲା କରିବା ନିମନ୍ତେ ଯେଉଁ ବ୍ୟୂହ ରଚନା କରୁଥିଲେ, ହଠାତ୍ ଅଧିକ ସଂଖ୍ୟକ ଶତ୍ରୁସୈନ୍ୟ ପହଞ୍ଚିଯିବା ଫଳରେ ସେ ବ୍ୟୂହ ବିଫଳ ହେଲା । ଚନ୍ଦ୍ରବର୍ମା ଓ ସୁବାହୁ ପଳାଇ ଯିବାକୁ ଉଦ୍ୟତ ହେଲେ । କେତେଜଣ ଶତ୍ରୁ ସୈନିକ ସେମାନଙ୍କୁ ଅନୁଧାବନ କଲେ । ସେମାନଙ୍କ କବଳରୁ ନିଷ୍କୃତି ପାଇବା ନିମନ୍ତେ ଚନ୍ଦ୍ରବର୍ମା ଓ ସୁବାହୁ ପାହାଡ଼ ତଳେ ବହୁଥିବା ନଦୀ ଭିତରକୁ ଲଂଫ ଦେଲେ । ତା'ପରେ—]

ଚନ୍ଦ୍ରବର୍ମା ନଦୀରେ ପଡ଼ି ପ୍ରଥମେ କିଛି ଗଭୀରକୁ ଚାଲିଗଲେ । ତା'ପରେ ପ୍ରବଳ ଶକ୍ତିରେ ସେ ସନ୍ତରଣ କରିବାକୁ ଲାଗିଲେ । ସୁବାହୁ ତାଙ୍କ ସହ ନଦୀ ଗର୍ଭକୁ ଡେଇଁଛନ୍ତି ନା ଶତ୍ରୁ କବଳରେ ପଡ଼ିଛନ୍ତି, ଏ ବିଷୟରେ ସେ ନିଃସନ୍ଦେହ ହୋଇ ପାରୁ ନଥିଲେ ।

କେତେ ସମୟ ବିତିଗଲା ସେ ଜାଣନ୍ତି ନାହିଁ । ଯେତେବେଳେ ତାଙ୍କର ଚେତା ହେଲା, ସେ ଦେଖିଲେ ଗୋଟିଏ ଘନ ଜଙ୍ଗଲ ଭିତରେ ସେ ପଡିଛନ୍ତି । ସେ ଉଠି ବସିଲେ ଓ କ'ଣ କ'ଣ ଘଟିଥିଲା ତାହା ସ୍ମରଣ କରିବାକୁ ଚେଷ୍ଟା କଲେ । ସବୁ ମନେ ପଡ଼ିଲା । ସେ ବୁଝିଲେ ଯେ ନଦୀରେ ଜୁଆର ଆସିଥିଲା ବେଳେ ସେ




ଅନେକ ଦୂର ଭାସି ଜୁଆର ଛାଡ଼ିଯିବା ବେଳକୁ କୂଳରେ ରହିଯାଇଛନ୍ତି । ସେ ମରିଯାଇ ପାରିଥାନ୍ତେ । କିନ୍ତୁ ତାହା ଯେ ହୋଇନାହିଁ, ଏହା ତାଙ୍କର ଭାଗ୍ୟର କଥା ।

ଏହାପରେ ଭୟଙ୍କର ଜଙ୍ଗଲ ଭିତରେ ସେ ଯେ ଏକାକୀ, ଏ ବିଷୟରେ ସେ ସଚେତ ହେଲେ । କ୍ଷୁଧା ଶାନ୍ତ ହୋଇଯିବା ପରେ ନିଜର କର୍ତ୍ତବ୍ୟ କ'ଣ ସେକଥା ସେ ଚିନ୍ତା କରିବାକୁ ଲାଗିଲେ । ସେ ଯେ ଶତ୍ରୁ କବଳରୁ ଖସି ଆସି ପାରିଲେ, ଭୀଷଣ ନଦୀ ଗର୍ଭରୁ ବଞ୍ଚିଗଲେ, ଏସବୁ ସୌଭାଗ୍ୟର କଥା ନିଶ୍ଚୟ, କିନ୍ତୁ ଯେଉଁ ଭଳି ଭୟଙ୍କର ଜଙ୍ଗଲ ଭିତରେ ବର୍ତ୍ତମାନ ଆସି ପଡ଼ିଛନ୍ତି, ଏହା କ'ଣ ଦୁର୍ଭାଗ୍ୟ ନୁହେଁ ? ଏ ଜଙ୍ଗଲରେ ଖାଲି ପଶୁପକ୍ଷୀ ଅଛନ୍ତି ନା ମଣିଷ ଅଛନ୍ତି, ଏହା ଜାଣିବା ବି କାଠିକର ।

ସେ ଜଙ୍ଗଲ ଭିତରେ କିଛି ଦୂର ଅଗ୍ରସର ହୋଇ ଅବସ୍ଥା ବୁଝିବାକୁ ନିଶ୍ଚୟ କଲେ ଓ ସେହି ଅନୁସାରେ ଆଗକୁ ଚାଲିଲେ । କିଛି-ଦୂର ଯାଇଛନ୍ତି, ହଠାତ୍ ଦୂରରୁ କିଛି ଶବ୍ଦ ଶୁଭିଲା । ପରେ ପରେ ସିଟି ଶବ୍ଦରେ ଜଙ୍ଗଲ ଗୁଞ୍ଜରି ଉଠିଲା ।

ଯେତେବେଳେ ସେ ବୁଝିଲେ କି ସେସବୁ ଶବ୍ଦ କୌଣସି ମଣିଷଙ୍କର ବା ଜନ୍ତୁ ଜାନୁଆର୍‌ଙ୍କର ନୁହେଁ, ଖାସ୍ ଗଛ ଭିତରୁ ସେ ଶବ୍ଦ ବାହାରୁଛି, ସେତେବେଳେ ସେ ଯେ ଗୋଟାଏ ଯାଦୁ ଜଙ୍ଗଲ ଭିତରେ ଆସି ପହଞ୍ଚିଛନ୍ତି, ଏ ବିଷୟରେ ତାଙ୍କର କୌଣସି ସନ୍ଦେହ ରହିଲା ନାହିଁ । ଗଛ ଗୁଡ଼ିକର ଶାଖା ପ୍ରଶାଖା ତଳକୁ ନଇଁ ଆସି ତାଙ୍କର ଗତିରୋଧ କରିବାକୁ ଚେଷ୍ଟା କଲେ । ସେ ଯୁଆଡ଼େ ଯିବାକୁ ଚାହିଁଲେ, ସେହି ଦିଗରେ ଗଛମାନେ ତାଙ୍କୁ ବାଧା ଦେବା ଭଳି ଲାଗିଲା ।

ସେ କ'ଣ କରିବେ ପ୍ରଥମେ ବୁଝି ପାରିଲେ ନାହିଁ । ନିଜ ପାଖରେ ଏକମାତ୍ର ସହାୟ ଯାହା ଥିଲା, ତାହା ହେଲା ତାଙ୍କ ତରବାରି । ସେ ତରବାରିଟି ବାହାର କରି ନିଜ ସାମ୍ନାରେ ତଳ ଆସିଥିବା ଗୋଟାଏ ବଡ଼ ଶାଖାରେ ଚୋଟେ ପକାଇଲେ । ସଙ୍ଗେ ସଙ୍ଗେ ସେ

ଗୁଞ୍ଜରଣ ଧ୍ୱନି ଦଶଗୁଣ ବଢ଼ିଗଲା । ସେତିକି ନୁହେଁ, ବଣ ଭିତରେ ନିଆଁ ଜଳି ଉଠିଗଲା । ତାଙ୍କ ଆଗରେ ଠିଆ ହୋଇଥାଏ ସତେ ଅବା ଗୋଟିଏ ଆଗ୍ନେୟ ଗିରି ଏବଂ ସେଇଥିରୁ ଅଗ୍ନି ବାହାରୁଥିଲା !

ସେ ପୁଣି ଶୁଣିଲେ ଗୋଟାଏ ଭୟଙ୍କର ହିସ୍ ହିସ୍ ଶବ୍ଦ । ଶବ୍ଦ ଯୁଆଡ଼ୁ ଆସୁଥିଲା, ସେ ଆଡ଼କୁ ଅନାଇ ଦେଖିଲେ, ଗୋଟିଏ ପ୍ରଚଣ୍ଡ ତିନିମୁଣ୍ଡ ବିଶିଷ୍ଟ ସାପ ତାଙ୍କ ଆଡ଼କୁ ଫଣା ବିସ୍ତାର କରୁଛି ।

ଯୁଆଡ଼େ ଗଲେ ସିଆଡ଼େ ବିପଦ ! ତେବେ ଧୈର୍ଯ୍ୟ ହରାଇଲେ ଚଳିବ ନାହିଁ । ଚନ୍ଦ୍ରବର୍ମା ନିଜ ଅସିକୁ ଶକ୍ତ ହାତରେ ମୁଠାଇ ଧରିଥାନ୍ତି । ସେ ସାପର ଫଣା କାଟି ଦେବା ନିମନ୍ତେ ଅସି ଉଞ୍ଚାଇଲା ବେଳକୁ ଅଳ୍ପ ଦୂରରୁ ବିକୃତ ଅଥଚ ସ୍ନେହପୂର୍ଣ୍ଣ କଣ୍ଠସ୍ୱର ଶୁଣିଲେ ।

"ଆରେ କଳ ନାଗ ! ତୁ ସେ ମଣିଷର ଅନିଷ୍ଟ କରିବା ଠିକ୍ ନୁହେଁ । ସେ ବାଟ ଭୁଲି ଏଠାକୁ ଆସିଛି । ସେ ଆମର ଅତିଥି । ତାକୁ ବରଂ ଏଆଡ଼େ ବାଟ କଢ଼ାଇ ନେଇ ଆ ।"

ସେ ନିର୍ଦ୍ଦେଶ ଶୁଣିବା ମାତ୍ରେ ସେ ଭୟଙ୍କର ସାପ ହଟିଗଲା ଓ ଅପେକ୍ଷା କଲା । ଜଙ୍ଗଲର ସବୁ ଶବ୍ଦ ମଧ୍ୟ ଶାନ୍ତ ହୋଇଗଲେ । ନାନା ଧରଣର ଯେଉଁ ଭଳି ଶବ୍ଦମାନ ଶୁଣାଯାଉଥିଲା, ସେସବୁ ମଧ୍ୟ ନୀରବ ହୋଇଗଲା । ପବନର ଗତି ମଧ୍ୟ ମୃଦୁ ହେଲା । ଚନ୍ଦ୍ରବର୍ମା ବିସ୍ମିତ ହୋଇ ସେ କଳନାଗ ଆଡ଼େ ଅନାଇ ରହିଲେ ।






କଳନାଗ ନିଜର ଫଣା ହଲାଇ ଏପରି ସଙ୍କେତ ଦେଲା, ଯାହାର ଅର୍ଥ ସେ ତାଙ୍କୁ ଅନୁସରଣ କରିବାକୁ ଚନ୍ଦବର୍ମାଙ୍କୁ କହୁଛି ବୋଲି ଚନ୍ଦ୍ରବର୍ମା ବୁଝିଲେ ।

ଚନ୍ଦ୍ରବର୍ମା ଇତସ୍ତତଃ କରିବାରୁ ଦେଖି କଳନାଗ ପୁଣି ପଛକୁ ବୁଲିପଡ଼ି ସେହି ଏକା ପ୍ରକାର ସଙ୍କେତ ଦେଲା । ଚନ୍ଦ୍ରବର୍ମା ଚିନ୍ତା କରି ଦେଖିଲେ, ତାକୁ ଅନୁସରଣ କରିବା ବିନା ତାଙ୍କ ଆଗରେ ଅନ୍ୟ ଗତି ନାହିଁ । ଏ ଜଙ୍ଗଲ ଯେ କୌଣସି ଅସାଧାରଣ ଯାଦୁକର କବଳରେ ରହିଛି, ଏଥିରେ ତାଙ୍କର ସନ୍ଦେହ ନଥିଲା । ସେ ନିଜ ଶକ୍ତି ଦ୍ୱାରା ଏଠାରୁ ସହଜରେ ଖସି ଯାଇ ପାରିବେ, ଏଭଳି ସମ୍ଭାବନା ସେ ଦେଖୁ ନଥିଲେ । ତେଣୁ କଳନାଗକୁ ଅନୁସରଣ ନକରି ଉପାୟ କ'ଣ ?

ସେ ଅସିକୁ ଦୃଢ଼ ଭାବରେ ଧରି କଳନାଗକୁ ଅନୁସରଣ କଲେ । କଳନାଗ ଖୁସି ହୋଇଗଲା ବୋଲି ମନେ ହେଲା ।

କିଛି ଦୂର ଅଗ୍ରସର ହୋଇ ଚନ୍ଦ୍ରବର୍ମା ଗଛଲତା ଭିତରେ ଗୋଟାଏ ବିକୃତ ପ୍ରାଣୀ ଦେଖିଲେ । ତା'ର ମୁଣ୍ଡ ଓ ପକ୍ଷ ବାଜପକ୍ଷୀ ଭଳି, ଅଥଚ ଦେହ ସିଂହ ଭଳି । ତା' ଆଗକୁ ପହଞ୍ଚି ନାଗ ରହିଗଲା ଓ ତା ତିନିମୁଣ୍ଡରୁ ହିସ୍ ହିସ୍ ଶବ୍ଦ ବାହାରିଲା । ଚନ୍ଦ୍ରବର୍ମା ଦେଖୁଥିବା ଅବସ୍ଥାରେ ସେ ଅଦ୍ଭୁତ ପ୍ରାଣୀ ଯେପରିକି ଦୁଇଖଣ୍ଡ ହୋଇଗଲା । ପର ମୁହୂର୍ତ୍ତରେ ସେ ସ୍ଥାନରେ ଦେଖାଦେଲା ଗୋଟିଏ କୁଟୀର । ସେ କୁଟୀର ଦ୍ୱାରରେ ଠିଆ ହୋଇଥାଏ ଗୋଟିଏ କ୍ଷୀଣକାୟ ଦୁର୍ବଳ ବୁଢ଼ୀ । ସେ ସିଧା ଠିଆ ହୋଇ ପାରୁ ନଥାଏ । ବାଡ଼ିରେ ଭର ଦେଇ କୌଣସି ମତେ ନିଜ ଓଜନ ସମ୍ଭାଳୁଥାଏ ।

ସେ ଦୃଶ୍ୟ ଦେଖି ଚନ୍ଦ୍ରବର୍ମା ପ୍ରଥମେ କିଛି କହିପାରିଲେ ନାହିଁ । ସେ ବୁଝି ପାରିଲେ ନାହିଁ ସେ ଜଣକ ମଣିଷ ନା ପିଶାଚନୀ । ବୁଢ଼ୀ ତିନିଥର ବାଡ଼ି ଠୁକାଇ କହିଲା, "କଳ ନାଗ ! ତୁ ଏଥର ଗୁଳିଯା ।"

ତା'ପରେ ଚନ୍ଦ୍ରବର୍ମାଙ୍କ ଆଡ଼େ ଅନାଇ ବୁଢ଼ୀ କହିଲା, "ବାପା, ଭିତରକୁ ଆସ । କେତେଦିନ ହେଲା ତମକୁ ଅପେକ୍ଷା କରିଛି !"

"ମୋତେ ଅପେକ୍ଷା କରୁଛ !" ଚନ୍ଦ୍ରବର୍ମା ଆଶ୍ଚର୍ଯ୍ୟ ହୋଇ ପଚାରିଲେ ।

"ହଁ, ହଁ, ତମକୁ ଅପେକ୍ଷା କରୁଛି । ତମେ ମୋର ବିଶେଷ ସହାୟତା କରି ପାରିବ । ମୁଁ ବି ତମର ସହାୟତା କରିବି । ମୁଁ ତମର ଶତ୍ରୁ ନୁହେଁ । ଭୟ କର ନାହିଁ ।" ବୁଢ଼ୀ କହିଲା ।

"ତମେ କିଏ ? ମୁଁ କିଏ ସେକଥା ବା ତମେ ଜାଣିଲ କିପରି ?" ଚନ୍ଦ୍ରବର୍ମା ଏ ପ୍ରଶ୍ନ କରି ସ୍ତ୍ରୀ ଲୋକଟି ଆଡ଼େ ଅଗ୍ରସର ହେଲେ ।

"ମୋ ନାମ କାପାଳିନୀ । ତୁମର କୌଣସି ଅନିଷ୍ଟ କରିବା ମୋର ମତଲବ୍ ନୁହେଁ । ତେଣୁ ସେ ଅସୀକୁ କୋଷରେ ରଖ । ଯଦି ମୁଁ ତମର କୌଣସି ଅନିଷ୍ଟ କରିବାକୁ ଚାହିଁବି, ତେବେ ଅସୀ ତମକୁ ରକ୍ଷା କରିପାରିବ ନାହିଁ । ତମେ ଜଙ୍ଗଲରେ ପଶିବା ମାତ୍ରେ ମୋ ଶକ୍ତିର ପରିଚୟ ପାଇଛ ।" ବୁଢ଼ୀ କହିଲା ।

"ତମ ଶକ୍ତିର ପରିଚୟ ?" ଚନ୍ଦ୍ରବର୍ମା ପଚାରିଲେ ।

"ହଁ, ଗଛମାନେ ତମ ପଥରୋଧ କରିବାଠୁଁ ଆରମ୍ଭ କରି ସେ ପ୍ରଚଣ୍ଡ ଶବ୍ଦ—ସେ ସବୁ ମୋହର ଯାଦୁଶକ୍ତି ଯୋଗୁଁ ସମ୍ଭବ ହେଉଥିଲା ।" ବୁଢ଼ୀ ବୁଝାଇ ଦେଲା ।

ଚନ୍ଦ୍ରବର୍ମା ବୁଝିଲେ, ବାସ୍ତବିକ ବୁଢ଼ୀର ଯାଦୁଶକ୍ତି ଆଗରେ ତାଙ୍କର ବଳ କିଛି ନୁହେଁ । ସେ ତରବାରି କୋଷରେ ରଖି କହିଲେ, "କାପାଳିନୀ, ମୁଁ ବାସ୍ତବିକ ବଡ଼ ସଙ୍କଟରେ ପଡ଼ିଛି । ତେଣେ ରାଜ୍ୟ ହରାଇଥିଲି, କିଛି ସମୟ ହେଲା ମୋ ଶୁଭେଚ୍ଛୁ ବନ୍ଧୁକୁ ମଧ୍ୟ





ହରାଇଛୁ । ତୁମର ଅନିଷ୍ଟ ମୁଁ କାହିଁକି କରିବି ? ମୋତେ ସେଥିରୁ କ'ଣ ମିଳିବ ? ତୁମେ ମୋତେ ବିଶ୍ୱାସ କରିବ, ମୁଁ ଏତିକି ଆଶା କରୁଛି ।"

"ଚନ୍ଦ୍ରବର୍ମା, ମୁଁ ତମକୁ ନିଶ୍ଚୟ ସାହାଯ୍ୟ କରିବି । ତହିଁ ପୂର୍ବରୁ କିନ୍ତୁ ତମକୁ ମୋତେ ଗୋଟାଏ ବିଷୟରେ ସାହାଯ୍ୟ କରିବାକୁ ପଡ଼ିବ ।" କାପାଳିନୀ କହିଲା ।

କାପାଳିନୀ ହଠାତ୍ ତାଙ୍କର ନାମ ଉଚ୍ଚାରଣ କରିବାର ଦେଖି ତା'ର ଅଦ୍ଭୁତ ଶକ୍ତି ସମ୍ପର୍କରେ ଚନ୍ଦ୍ରବର୍ମାଙ୍କର ଆଉ କୌଣସି ସନ୍ଦେହ ରହିଲା ନାହିଁ । ସେ ଭାବିଲେ କାପାଳିନୀ ନିଜର ଯାଦୁ ଦୃଷ୍ଟି ବଳରେ ଅନେକ କଥା ଜାଣି ପାରୁଥିବ । ବୀରପୁରରେ ଏହା ଭିତରେ କ'ଣ ଘଟିଲାଣି, ତାଙ୍କ ସେନାପତି ଧୀରମଲ୍ଲଙ୍କ ଅବସ୍ଥା କ'ଣ, ସୁବାହୁ କୁଆଡ଼େ ଗଲେ, ଏସବୁ ମଧ୍ୟ ହୁଏତ କାପାଳିନୀ କହିଦେଇ ପାରିବ ।

ଚନ୍ଦ୍ରବର୍ମା ଆଉ ଦ୍ୱିଧା ନକରି କାପାଳିନୀର ନିର୍ଦ୍ଦେଶ ମାନି ତା' କୁଟୀର ଭିତରେ ପଶିଲେ । ଭିତରକୁ ଯାଇ ସେ ଦେଖିଲେ ଘରଟିକୁ ଯେତେ ସାଧାରଣ ଓ ଛୋଟ ବୋଲି ସେ ଭାବିଥିଲେ, ତାହା ବାସ୍ତବିକ୍ ସେଭଳି ନୁହେଁ । କାନ୍ଥରେ ଖଞ୍ଜା ହୋଇଥାଏ ନରମୁଣ୍ଡମାଳ । ଗୋଟିଏ ଅଦ୍ଭୁତ ଗୋଲାକାର ଚିଜ ଥାଏ ଯାହା ଭିତରଟି ଆକାଶ ଭଳି ପରିଷ୍କାର ।

"ଚନ୍ଦ୍ରବର୍ମା! ତମେ ସେଇଠି ବସ!" କାପାଳିନୀ ସେ ଗୋଲାକାର ଚିଜ ପାଖରେ ଥିବା ଗୋଟିଏ ଆସନ ଆଡ଼େ ଅଙ୍ଗୁଳି ନିର୍ଦ୍ଦେଶ କରି କହିଲା । ତା'ପରେ ସେ ପୁଣି କହିଲା, "ତମେ ଯେ ଜଣେ ଭାଗ୍ୟବାନ ବ୍ୟକ୍ତି, ସେଥିରେ ମୋର ସନ୍ଦେହ ନାହିଁ । ନ ହେଲେ ନଦୀରେ ବୁଡ଼ି ତମର ମୃତ୍ୟୁ ହୋଇଥାନ୍ତା । ମୁଁ ଯେଉଁ କାର୍ଯ୍ୟ ସାଧନ କରିବାକୁ ଚାହେଁ, ସେଥିରେ ସାହାଯ୍ୟ କରିବା ନିମନ୍ତେ ତୁମେହିଁ ଉପଯୁକ୍ତ ବ୍ୟକ୍ତି । ଆଉ କେହି ସେ ବିଷୟରେ କିଛି କରିପାରିବେ ନାହିଁ ।"

ଚନ୍ଦ୍ରବର୍ମା ଆସନ ଗ୍ରହଣ କଲେ ଓ କହିଲେ, "କାପାଳିନୀ! ତୁମ ଆଗରେ ଥିବା ଏ ସ୍ୱଚ୍ଛ




ଗୋଲକଟି ଗୋଟାଏ କିଛି ଅଦ୍ଭୁତ ଚିଜ ବୋଲି ମନେ ହୁଏ । ମୁଁ ପୂର୍ବରୁ ଏଭଳି ଚିଜମାନଙ୍କ କଥା ଶୁଣିଛି । ଏହା ଭିତରେ କ'ଣ ସତରେ ଭୂତ ଭବିଷ୍ୟତ ଦେଖି ହୁଏ ?”

ଚନ୍ଦ୍ରବର୍ମାର ପ୍ରଶ୍ନ ଶୁଣି ଦୀର୍ଘଶ୍ୱାସ ଛାଡ଼ି କାପାଳିନୀ କହିଲା, “ବାପା ଚନ୍ଦ୍ରବର୍ମା ! ଏ ଯାଦୁ ଗୋଲକ ଅତୀତ ଓ ବର୍ତ୍ତମାନ ଦେଖାଇ ଦେଇ ପାରେ, କିନ୍ତୁ ଭବିଷ୍ୟତ ନୁହେଁ । ମୁଁ ଯଦି ଭବିଷ୍ୟତ ଜାଣି ପାରୁଥାନ୍ତି, ତେବେ କିଛି ଚିନ୍ତା ନଥିଲା । ସେଇଥିପାଇଁ ଗୋଟାଏ କଠିନ କାମରେ ମୁଁ ତମ ସହାୟତା ଲୋଡ଼ୁଛି । କୁହ, ମୋର ସହାୟତା କରିବ ?”

“କାମଟି କ'ଣ ଅତ୍ୟନ୍ତ କଠିନ ?” ଚନ୍ଦ୍ରବର୍ମା ପଚାରିଲେ ।

“ହଁ, କାମଟି ଦୁଃସାଧ୍ୟ ନିଶ୍ଚୟ, ତେବେ ଅସାଧ୍ୟ ନୁହେଁ । କହୁଛି, ଶୁଣ । ବହୁତ ଦୂରରେ ଶଙ୍ଖୁ ନାମକ ତାନ୍ତ୍ରିକ ଅଛି । ତୁମକୁ ତା' ଘରକୁ ଯାଇ ମୋ ସକାଶେ ଗୋଟିଏ ବସ୍ତୁ ଚୋରାଇ ନେଇ ଆସିବାକୁ ପଡ଼ିବ । ସେ ବସ୍ତୁ ପାଇଗଲେ ମୁଁ ହଜାରେ ବର୍ଷ ପର୍ଯ୍ୟନ୍ତ ପୂର୍ଣ୍ଣ ଯୌବନ, ସ୍ୱାସ୍ଥ୍ୟ ଲାଭ କରି ସୁଖରେ କାଳାତିପାତ କରିବି । ନହେଲେ···”

କାପାଳିନୀ କଥା ବନ୍ଦ କରି କାନ୍ଦିବାକୁ ଲାଗିଲା । ତା' ଅବସ୍ଥା ଦେଖି ଚନ୍ଦ୍ରବର୍ମାଙ୍କ ମନରେ ଗଭୀର ସହାନୁଭୂତିର ଉଦ୍ରେକ ହେଲା । ପ୍ରଥମେ ସେ ବୁଢ଼ୀ ପ୍ରତି ତାଙ୍କ ମନରେ ଯେଉଁ ସନ୍ଦେହ ଥିଲା, କାଳେ ସିଏ ତାଙ୍କୁ ବିପଦରେ ପକାଇବ ବୋଲି ଧାରଣା ଥିଲା, ସେସବୁ ବର୍ତ୍ତମାନ ଦୂର ହୋଇଗଲା ।

“କାପାଳିନୀ, ମୁଁ ନିଜ ସାଧ୍ୟ ମୁତାବକ ତୁମର ସହାୟତା କରିବି । କିନ୍ତୁ ପ୍ରଥମେ ତୁମେ ମୋର ଗୋଟାଏ ଉପକାର କର । ବୀରପୁର ନଗରୀରେ ବର୍ତ୍ତମାନ କ'ଣ ଘଟୁଛି, ସେକଥା ମୁଁ ଜାଣିବା ଦରକାର । ମୋ ସେନାପତି ଧୀରମଲ୍ଲଙ୍କ ଗତି କ'ଣ ହେଲା ? ମୋ ସାଥି ସୁବାହୁ ଗଲେ କୁଆଡ଼େ ? ତମର ଏ ଯାଦୁ ଗୋଲକ ଜରିଆରେ ତମେ ଏସବୁ କଥା ମୋତେ କହିଦେଇ ପାରିବ ?” ଚନ୍ଦ୍ରବର୍ମା ପଚାରିଲେ ।

କାପାଳିନୀ ଅଳ୍ପ ହସି ଉଠି ଠିଆ ହେଲା । କାନ୍ଥରେ ଝୁଲୁଥିବା ଅସ୍ଥି ଦଣ୍ଡଟି ଆଣି ଯାଦୁଗୋଲକ ଦେହରେ ଛୁଆଇଁ କହିଲା, "ଦେଖ, ତମ ବୀରପୁର ନଗରୀରେ କ'ଣ ହେଉଛି ଲକ୍ଷ୍ୟ କର ।"

ଗୋଲକ ଭିତରକୁ ଅନାଇ ଚନ୍ଦ୍ରବର୍ମା ଯାହା ଦେଖିଲେ, ସେଥିରେ ତାଙ୍କ ଦୁଃଖ ଦ୍ୱିଗୁଣ ହେଲା । ନଗରୀ ଧୁ ଧୁ ହୋଇ ଜଳୁଥିଲା । ଲୋକେ ଅତର୍ଛା ଏଣେ ତେଣେ ଦୌଡ଼ୁଥିଲେ । "ବନ୍ଦ କର, ବନ୍ଦ କର! ଏ ଦୃଶ୍ୟ ମୁଁ ଅଧିକ ସମୟ ଦେଖିପାରିବ ନାହିଁ ।" ଚନ୍ଦ୍ରବର୍ମା କହିଲେ ।

କାପାଳିନୀ ସେ ଅସ୍ଥି ଦଣ୍ଡଟି ପୁନର୍ବାର ଗୋଲକ ଦେହରେ ଛୁଆଇଁ ଦେଲା । ତତ୍‌କ୍ଷଣାତ୍ ସେ ଦୃଶ୍ୟ ଲିଭିଗଲା । କାପାଳିନୀ ଆଉ ଥରେ ଅସ୍ଥି ଦଣ୍ଡକୁ ଗୋଲକରେ ଛୁଆଇଁ କହିଲା, "ତମ ସେନାପତି ଧୀରମଲ୍ଲକୁ ଦେଖିବ ପରା ?"

ଉତ୍କଣ୍ଠା ଭରେ ଚନ୍ଦ୍ରବର୍ମା ଗୋଲକ ଭିତରକୁ ଦୃଷ୍ଟି ଦେଲେ । ଗୋଟାଏ ପାହାଡ଼ିଆ ଘାଟି ସ୍ଥାନରେ ଦଳେ ସୈନିକଙ୍କ ସହ ଧୀରମଲ୍ଲ ଶତ୍ରୁ ସେନା ଦ୍ୱାରା ପରିବେଷ୍ଟିତ ହୋଇ ଆସୁଥିଲେ । ସର୍ପକେତୁର ସୈନ୍ୟ ସଂଖ୍ୟାରେ ଥିଲେ ଅଧିକ । ସେମାନେ ଧୀରମଲ୍ଲଙ୍କ ପାଖରେ ପହଞ୍ଚି ଯାଇଥିଲେ ପ୍ରାୟ । ଧୀରମଲ୍ଲ ନିଜ ଘୋଡ଼ା ରୋକି ଅନୁଚରମାନଙ୍କୁ କିଛି ନିର୍ଦ୍ଦେଶ ଦେଲେ । ତା'ପରେ ତରବାରି ଉଞ୍ଚାଇ ଶତ୍ରୁମାନଙ୍କ ଭିତରକୁ ଘୋଡ଼ା ଛୁଟାଇ ଦେଲେ ।

"ବାସ୍, ଏହାପରେ କ'ଣ ହେବ, ତମେ ଦେଖିବା ଉଚିତ ନୁହେଁ ।" ଏହା କହି କାପାଳିନୀ ଆଉ ଥରେ ଅସ୍ଥିଦଣ୍ଡ ସେ ଗୋଲକରେ ଛୁଆଇଁ ଦେଲା । ଦୃଶ୍ୟ ଲିଭିଗଲା ।

ଚନ୍ଦ୍ରବର୍ମା ଆଶ୍ଚର୍ଯ୍ୟ ହୋଇ ତଥାପି ସେ ଯାଦୁଗୋଲକ ଆଡ଼େ ଚାହିଁ ରହିଥାନ୍ତି ।

(କ୍ରମଶଃ)






# ପରିବର୍ତ୍ତନ

ନିଶା ଗରଜୁଥିଲା । ଛୁଡ଼ାକୁ ଛୁଡ଼ା ବର୍ଷା ସାଙ୍ଗକୁ ତୀବ୍ର ଶୀତଳ ପବନ ବହୁଥିଲା । ବଜ୍ରଧ୍ୱନି ଓ ଶ୍ୱାନଶ୍ୱାପଦଙ୍କ ରଡ଼ ସାଙ୍ଗକୁ ଶୁଭୁଥିଲା ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୁହଁଟିମାନ ।

କିନ୍ତୁ ରାଜା ବିକ୍ରମାର୍କ ଟିକେ ମଧ୍ୟ ବିଚଳିତ ନହୋଇ ପୁନର୍ବାର ସେ ପ୍ରାଚୀନ ବୃକ୍ଷ ଆରୋହଣ କଲେ ଓ ଶବଟିକୁ ଉତାରି ଆଣିଲେ । ତେବେ ତାକୁ କାନ୍ଧରେ ପକାଇ ଶୁନ୍‌ଶାନ୍ ଶ୍ମଶାନ ପଥ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା ! ତମେ କି ପ୍ରକାର ସିଦ୍ଧି ଲାଭ ଆଶାରେ ଏଭଳି ଦୁର୍ଯୋଗପୂର୍ଣ୍ଣ ରଜନୀରେ ଏ ପରିଶ୍ରମ କରୁଛ ? ବେଳେ ବେଳେ ସିଦ୍ଧି ହାତରେ ପାଇ ମଧ୍ୟ ତାକୁ ପରିତ୍ୟାଗ

## ବେତାଳ କଥା

କଳାଭଳ ଲୋକ ଥିବାର ମୁଁ ଜାଣେ । ଗୋଟାଏ ଦୃଷ୍ଟାନ୍ତ ଦେଉଛି । ମନଦେଇ ଶୁଣ । ଶୁଣିଲେ ଶ୍ରମଟାର ଲାଘବ ମନେ ହେବ ।"

ବେତାଳ କହିଲା : ଅନେକଦିନ ତଳର କଥା । କୁନ୍ତଳ ରାଜ୍ୟ ସେତେବେଳେ ଶାସନ କରୁଥିଲେ ରାଜା ଶାନ୍ତଶୀଳ । ସେ ଥିଲେ ଅତ୍ୟନ୍ତ ପ୍ରଜା ବତ୍ସଳ ରାଜା । ଶାସନ କାର୍ଯ୍ୟରେ ମଧ୍ୟ ସେ ତାଙ୍କ ଦକ୍ଷତାର ଯଥେଷ୍ଟ ପ୍ରମାଣ ଦେଇଥିଲେ । ସେ ଅସାଧୁ କର୍ମଚାରୀ ବା ବ୍ୟବସାୟୀଙ୍କ ପ୍ରତି କଡ଼ା ଆଇନ ପ୍ରୟୋଗ କରୁଥିଲେ । ଦୁର୍ନୀତି କରୁଥିବା ଲୋକ ଯେତେ ପ୍ରଭାବଶାଳୀ ହୋଇଥାଉ ନା କାହିଁକି, ସେ ଆଇନ କବଳରୁ ଖସି ଯାଇ ପାରୁ ନଥିଲା । ଅନ୍ୟପକ୍ଷରେ ସାଧୁ ସଚ୍ଚୋଟ ଏବଂ ପରିଶ୍ରମୀ କର୍ମଚାରୀମାନଙ୍କୁ ସେ ପୁରସ୍କୃତ କରୁଥିଲେ ।

ରାଜ୍ୟରେ ଚୋରି ଡକାୟତି ପ୍ରାୟ ହେଉ ନଥିଲା କହିଲେ ଚଳେ । ତେବେ ସବୁ ପ୍ରକାର ସୁଶାସନ ସତ୍ତ୍ୱେ ପ୍ରାକୃତିକ ଦୁର୍ବିପାକରେ ପ୍ରଜାମାନେ ଅନେକ ସମୟରେ କଷ୍ଟ ପାଉଥିଲେ । ବାତ୍ୟା ଓ ବନ୍ୟା ଥିଲା କୁନ୍ତଳ ରାଜ୍ୟ ଉପରେ ସବୁଠାରୁ ବଡ଼ ବିପଦ । କୌଣସି ସ୍ଥାନରେ ବାତ୍ୟା ହୋଇ ଘର ଦ୍ୱାର ଭାଙ୍ଗିଗଲେ ରାଜା ସ୍ୱୟଂ ଯାଇ ସେଠାରେ ପହଞ୍ଚି ଯାଉଥିଲେ ଓ ଲୋକଙ୍କ ସେବାରେ ନିଜକୁ ନିୟୋଜିତ କରୁଥିଲେ । ଏପରି କି ବନ୍ୟା ବିପ୍ଳାତ ବେଳେ ସେ ନିଜେ ଡଙ୍ଗାରୁ ଡେଇଁ ପଡି ବିପଦାପନ୍ନ ଲୋକଙ୍କୁ ଉଦ୍ଧାର କରିବା ଭଳି ଘଟଣା ବି ଘଟିଥିଲା ।



ଥରେ ରାଜ୍ୟର ଉତ୍ତରାଞ୍ଚଳରେ ଭୀଷଣ ଝଡ଼ ବର୍ଷା ସାଙ୍ଗକୁ ବନ୍ୟା ହେଲା । ରାଜା ଯାଇ ନିକଟବର୍ତ୍ତୀ ନଦୀର ତଟରେ ଥିବା ଗୋଟିଏ କୋଠରୀରେ ରହି ବନ୍ୟା ସାହାଯ୍ୟ କାମ ତଦାରଖ କଲେ । ତାଙ୍କର ଧାରଣା ହେଲା, କର୍ମଚାରୀମାନେ ଯଦି ଆନ୍ତରିକ ନିଷ୍ଠା ଓ ପରିଶ୍ରମ ସହକାରେ କାମ କରନ୍ତେ, ତେବେ ଲୋକଙ୍କର ଆଶୁ ଉପକାର ହୁଅନ୍ତା ।

ଯେଥର ବନ୍ୟା ସାହାଯ୍ୟ କାମ ଶେଷ ହେବା ପରେ ରାଜା ରାଜଧାନୀକୁ ଫେରୁଥାନ୍ତି । ସିଧା ରାସ୍ତା ଭାଙ୍ଗିଯାଇଥିବାରୁ ତାଙ୍କୁ ବୁଲାଣିଆ ବାଟରେ ଗୋଟିଏ ବଣ ଭିତର ଦେଇ ଯିବାକୁ ହେଲା । ସେ ବଣରେ ଜଣେ ଯୋଗୀ ରହୁଥିଲେ । ତାଙ୍କ ବିଭୂତି ବିଷୟରେ ରାଜା ଭଲଭାବରେ ଜାଣିଥିଲେ ଓ ତାଙ୍କ ପ୍ରତି ରାଜାଙ୍କର ଯଥେଷ୍ଟ ଶ୍ରଦ୍ଧା ମଧ୍ୟ ଥିଲା । ତେବେ ସେ ଅନେକ ବର୍ଷ ହେଲା ତାଙ୍କୁ ଦେଖି ନଥିଲେ ।

ଏଥର ସୁଯୋଗ ମିଳିବାରୁ ରାଜା ଯୋଗୀଙ୍କୁ ଭେଟିଲେ । ଯୋଗୀ ଆନନ୍ଦିତ ହେଲେ ଓ କହିଲେ, "ବତ୍ସ ! ତମର ସମସ୍ତ ମନଧ୍ୟାନ ପ୍ରଜାଙ୍କ ମଙ୍ଗଳ ଚିନ୍ତାରେ । ତେଣୁ ତମ ପ୍ରତି ମୋର କିଛି କର୍ତ୍ତବ୍ୟ ଅଛି । ଯଦି ମୋଠୁଁ କିଛି ବର ଚାହୁଁଛ, ତେବେ କୁହ । ମୋର ସାଧ୍ୟର ଅତୀତ ନହେଲେ ମୁଁ ତାହା ଦେବି ।"

ରାଜା କହିଲେ, "ଯୋଗୀବର ! ପ୍ରଜାଙ୍କ ବିପଦ ଘଟିଲେ ମୋ କର୍ମଚାରୀମାନେ ସେମାନଙ୍କୁ ସାହାଯ୍ୟ କରିବା ନିମନ୍ତେ ଯଥେଷ୍ଟ କାମ କରନ୍ତି । କିନ୍ତୁ ମୋର ଧାରଣା,





ସେମାନେ ଆହୁରି ଅଧିକମାତ୍ରାରେ କାମ କରି ପାରନ୍ତେ । ଆପଣ ଯଦି ସେମାନଙ୍କ ପ୍ରକୃତି ବଦଳାଇ ଦେଇ ପାରନ୍ତେ, ଉପକୃତ ହୁଅନ୍ତି ।"

ଯୋଗୀ କିଛି ସମୟ ଧ୍ୟାନସ୍ଥ ରହି କହିଲେ, "ବତ୍ସ! ତମେ ଗୋଟିଏ ଦିନ ଏଠାରେ ଅପେକ୍ଷା କର ।"

ରାଜା ଉତ୍ସାହିତ ହୋଇ ବଣରେ ଡେରା ପକାଇ ରହିଲେ ।

ସାରା ରାତି ଯୋଗୀ ଧ୍ୟାନସ୍ଥ ରହିଲେ । ପରଦିନ ପ୍ରଭାତରେ ସେ ରାଜାଙ୍କୁ ଗୋଟିଏ ସୁନ୍ଦର ବାକ୍ସ ଦେଖାଇ କହିଲେ, "ବତ୍ସ! ସତ କଥା କହିଲେ, "ମଣିଷର ପ୍ରକୃତି ବଦଳାଇବାର ଶକ୍ତି ମୋର ନାହିଁ । କାହାର ବି ଥିବ କି ନା ସନ୍ଦେହ । ପ୍ରତ୍ୟେକ ମଣିଷହିଁ ନିଜ ଚରିତ୍ର ନିଜେ ବଦଳାଇ ପାରିବ । ଭଗବାନଙ୍କ ଆଶୀଷ ସେଥିରେ ସହାୟତା କରେ । ଆଉ କିଛି ଶକ୍ତି କାମ ଦେବ ନାହିଁ । ତେବେ ତମେ ଏ ଉପହାର ନିଅ । ଏହା ଭିତରେ ଏକ ଅଳଙ୍କାର ଅଛି । ତମେ ସେ ଅଳଙ୍କାର ଧାରଣ କରି ତମ କର୍ମଚାରୀମାନଙ୍କୁ କିଛି କରିବାକୁ ହୁକୁମ ଦେଲେ ସେମାନେ ସେ କାମ କରିବା ନିମନ୍ତେ ବିଶେଷ ଉତ୍ସାହ ପାଇବେ; ସଙ୍ଗେ ସଙ୍ଗେ ବଳ ମଧ୍ୟ ପାଇବେ ।"

"ଯୋଗୀବର! ଏହା କ'ଣ ସବୁଦିନ ପାଇଁ କାର୍ଯ୍ୟକାରୀ ହେବ?" ରାଜା ପଚାରିଲେ ।

"ନା । ମୁଁ ଆଉ ପାଞ୍ଚ ବର୍ଷ ପରେ ଦେହ ଛାଡ଼ିବି । ମୁଁ ଦେହ ଛାଡ଼ିବା ମାତ୍ରେ ଏଥିରେ ଥିବା ଶକ୍ତି ମୋ ଆତ୍ମା ପାଖକୁ ଫେରି ଆସିବ । କାରଣ ତାହା ମୋର ଯୋଗଶକ୍ତି ।"

ରାଜା ଏକଥା ଶୁଣି ମୁଣ୍ଡ ତଳକୁ କରି କିଛି ସମୟ ଛିଡ଼ା ହୋଇ ରହିଲେ ଓ ତା'ପରେ ଅତି ନମ୍ର କଣ୍ଠରେ କହିଲେ, "ମହାଭାଗ! ଆପଣ ମୋତେ କ୍ଷମା କରନ୍ତୁ । ଏହା ନେବା ମୋ ପକ୍ଷରେ ଠିକ୍ ହେବ ନାହିଁ ।"

ଯୋଗୀ ମୃଦୁ ହାସ୍ୟ ସହକାରେ କହିଲେ, "ବତ୍ସ! ମୁଁ ତୁମକୁ ଆଶୀର୍ବାଦ କରୁଛି । ତୁମ ଦୃଷ୍ଟାନ୍ତରେ ଅନୁପ୍ରାଣିତ ହେଲା ଭଳି ସୌଭାଗ୍ୟ ତୁମ କର୍ମଚାରୀମାନଙ୍କର ହେଉ !"

ରାଜା ଯୋଗୀଙ୍କୁ ପ୍ରଣାମ କରି ବିଦାୟ ନେଲେ ।

ବେତାଳ ଅଳ୍ପ ସମୟ ନୀରବ ରହି ଧମକ ଦେଲାଭଳି କଣ୍ଠରେ କହିଲା, "ରାଜା ! ମୋର କିଛି ସନ୍ଦେହ ରହିଛି । ରାଜା ଶାନ୍ତିଶୀଳ କୋଣା ନା ଯୋଗବିଦ୍ୟାରେ ଅବିଶ୍ୱାସୀ? ଯୋଗୀ ତାଙ୍କୁ ଯାଚୁଥିବା ମହାମୂଲ୍ୟ ଫଳ ଗ୍ରହଣ ନ କରିବା ପଛରେ ଅନ୍ୟ କି କାରଣ ବା ଥାଇପାରେ? ଜାଣିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତି ସତ୍ତ୍ୱେ ଯଦି ନୀରବ ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ ଉତ୍ତର ଦେଲେ : "ରାଜା ଶାନ୍ତିଶୀଳ ବିବେକୀ ଓ ବିଜ୍ଞ । ପାଞ୍ଚବର୍ଷ ପାଇଁ ସେ ଯେଉଁ ହୁକୁମ ଦିଅନ୍ତେ, ସେ ହୁକୁମ ତାମିଲ୍ କରିବା ଦିଗରେ କର୍ମଚାରୀମାନେ ଉତ୍ସାହ ଓ ବଳ ପାଆନ୍ତେ । କ୍ରମେ ସେହି ସାମୟିକ ଉତ୍ସାହ ଓ ବଳ ଉପରେ ସେମାନେ ନିର୍ଭର କରିବାକୁ ଶିଖନ୍ତେ । ନିଜର ସ୍ୱାଭାବିକ ଶକ୍ତି ସେମାନେ ହୁଏତ ହରାଇ ବସନ୍ତେ । ପାଞ୍ଚବର୍ଷ ପରେ ରାଜା ଦେଖନ୍ତେ ସେମାନେ ନା ସେ ଯୋଗଶକ୍ତି ବଳରେ କାମ କରୁଛନ୍ତି ନା ନିଜର ସ୍ୱାଭାବିକ ଉତ୍ସାହରୁ କାମ କରୁଛନ୍ତି । ରାଜା ନିଜର ସେବା ପରାୟଣ ପ୍ରକୃତି ଯୋଗୁଁ ପରିଶ୍ରମ କରୁଥିଲେ । ତାଙ୍କ ପରିଶ୍ରମ ସ୍ୱତଃସ୍ଫୁର୍ତ୍ତ । କର୍ମଚାରୀମାନେ କେବଳ କର୍ତ୍ତବ୍ୟ ଦୃଷ୍ଟିରୁ କାମ କରୁଥିଲେ । ତେଣୁ ରାଜାଙ୍କ କାମ ଓ ସେମାନଙ୍କ କାମ ଭିତରେ ପାର୍ଥକ୍ୟ ରହିବା ଅନିବାର୍ଯ୍ୟ । ଯଦି ରାଜାଙ୍କ ଦୃଷ୍ଟାନ୍ତ ଦେଖି ସେମାନେ ଭଲଭାବରେ କାମ କରିବାକୁ ପ୍ରେରଣା ପାଇବେ, ତେବେ ତାହା ହେବ ସେମାନଙ୍କ ଚରିତ୍ରରେ ସ୍ୱାଭାବିକ ବିକାଶ । ତାହାର ମୂଲ୍ୟ ସ୍ଥାୟୀ ।"

ରାଜାଙ୍କ ମୌନ ଭଙ୍ଗ ହେବା ମାତ୍ରେ ଶବସ୍ଥିତ ବେତାଳ ଯାଇ ପୁନର୍ବାର ସେ ବୃକ୍ଷ ଡାଳରେ ଝୁଲି ପଡ଼ିଲା । (କଳ୍ପିତ)





# ଦାରୁ ଓ ଦାଅଁ

ଗୋଟିଏ ଗାଁରେ ଥିଲେ ଜଣେ ବ୍ରାହ୍ମଣ । ସେ ଗରିବ, କିନ୍ତୁ ଭଲ ମଣିଷ । ତାଙ୍କ ଘରକୁ ଲାଗି ଜଣେ କାଠୁରିଆ ରହୁଥିଲା । ସେ ବି ଗରିବ । ଜୀବିକା ଅର୍ଜନ ପାଇଁ ସେ ପ୍ରତିଦିନ ବଣକୁ ଯାଏ ଓ କାଠ କାଟିଆଣି ତାକୁ ନେଇ ବିକ୍ରି କରେ । ଯେତିକି ପଇସା ମିଳେ, ସେଥିରେ ଡାଲି ଚାଉଳ କିଣି ଘରେ ଯୋଗାଏ ।

କିନ୍ତୁ ହଠାତ୍ ଦେଖାଗଲା, ସେ ଆଉ ବଣକୁ ଯାଉନାହିଁ । ତାକୁ ଆଉ ପୂର୍ବଭଳି କାଠ ବୋଝ ମୁଣ୍ଡାଇ ବୁଲିବାର ବି କେହି ଦେଖିଲେ ନାହିଁ । ସେତିକି ନୁହେଁ, ସେ ଗୋଟାଏ ନୂଆ ଘର ତିଆରି କଲା । ପୁଣି ସେ ଓ ତା' ସ୍ତ୍ରୀ ଯେମିତି ଲୁଗାପଟା ପିନ୍ଧିଲେ, ସେତେ ଦାମିକା ଲୁଗାପଟା ସେ ଗାଁରେ ଆଉ କେହି ପିନ୍ଧିପାରୁ ନଥିଲେ । ଘରେ ସେ ପୁଣି ଗୋଟାଏ ଚାକର ବି ରଖିଲା ।

"ଆମ ପଡ଼ୋଶୀର ଭାଗ୍ୟ ଏମିତି ବଦଳିଗଲା କିପରି? ପଚାରିଲେ ସେ ଖାଲି ହସି ମୁଣ୍ଡ ଟୁଙ୍ଗାରି ଦିଏ; କିଛି ପ୍ରକଟ କରେ ନାହିଁ ।" ଦିନେ ବ୍ରାହ୍ମଣ ତାଙ୍କ ସ୍ତ୍ରୀଙ୍କୁ କହିଲେ ।

"ଆଚ୍ଛା, ସେ ରହସ୍ୟ ମୁଁ ବୁଝିନେବି ।" ବ୍ରାହ୍ମଣୀ କହିଲେ । କାଠୁରିଆର ସ୍ତ୍ରୀଙ୍କ ସହିତ ତାଙ୍କର ଗଭୀର ବନ୍ଧୁତା ଥିଲା । ସେ ଅଳ୍ପଦିନ ଭିତରେ ସବୁ ରହସ୍ୟ ଜାଣିଗଲେ ଓ ସ୍ୱାମୀଙ୍କୁ କହିଲେ ।

ସେ ଆଶ୍ଚର୍ଯ୍ୟ ଘଟଣାଟି ଏମିତି:

ଥରେ ଲାଗି ଲାଗି ଦୁଇଦିନ ଧରି ଏମିତି ବର୍ଷା ହେଲା ଯେ କାଠୁରିଆ ମୋଟେ ବଣ ଭିତରକୁ ଯାଇ ପାରିଲା ନାହିଁ । ଫଳରେ କିଛି ଉପାର୍ଜନ ହେଲା ନାହିଁ । ଦୁଇଦିନ କାଳ ତା' ପରିବାର ଭୋକ ଉପାସରେ ରହିଲେ ।

ସାରଲା ଦ ସଙ୍କ କାହାଣୀ ଅବଲମ୍ବନରେ



ଦ୍ୱିତୀୟ ଦିନ ରାତିରେ କାଠୁରିଆ ମନକୁ ଗୋଟାଏ ବିଚିତ୍ର ଧାରଣା ଆସିଗଲା । ଗାଁ ପଛପଟେ ନଈ କୂଳରେ ଥାଏ ଦେବମନ୍ଦିର । ସେ ମନ୍ଦିରର ବିଗ୍ରହ କାଠରେ ତିଆରି । କାଠୁରିଆ କୌଶଳ କରି ମନ୍ଦିର ପଛ ଦୁଆର ଖୋଲି ଭିତରେ ପଶିଲା ଓ ବିଗ୍ରହକୁ ଚିରିବା ନିମନ୍ତେ କୁରାଢ଼ୀ ଉଠାଇଲା । ବିଗ୍ରହରୁ ଯେତିକି ଶୁଖିଲା କାଠ ମିଳିବ, ସେଥିରୁ ସେ କିଛି ହେଲେ ପଇସା ପାଇବ ବୋଲି ଆଶା କରୁଥିଲା ।

ହଠାତ୍ ସେ ଗୋଟାଏ ଗମ୍ଭୀର କଣ୍ଠ ଶୁଣିଲା । "ରୁହ, ରୁହ!" ସେ ସ୍ୱର କହିଲା ।

କାଠୁରିଆ ରହିଗଲା । "ତୋର ପଇସା ଦରକାର ତ? କାଲି ସୋମବାର । ସୂର୍ଯ୍ୟୋଦୟ ବେଳେ ନଈରେ ବୁଡ଼ ପକାଇବୁ । ଉଠିବା ବେଳକୁ ତୋ ହାତ ମୁଠିରେ ଥିବ ଖଣ୍ଡିଏ ସୁନା ।" କଣ୍ଠସ୍ୱର କହିଲା ।

କାଠୁରିଆ ଖୁସି ହୋଇ ମନ୍ଦିରରୁ ବାହାରି ଆସିଲା । ସୂର୍ଯ୍ୟୋଦୟ ବେଳେ ସେ ନଈରେ ବୁଡ଼ ପକାଇ ସୁନା ପାଇଲା । ତେଣିକି ପ୍ରତି ସୋମବାର ସେ ତାହାହିଁ କରେ ଓ ଖଣ୍ଡିଏ ଖଣ୍ଡିଏ ସୁନା ପାଏ । ତା'ର କିଛି ଅଭାବ ନାହିଁ ।

ବ୍ରାହ୍ମଣୀଠୁଁ ଏ କଥା ଶୁଣି ବ୍ରାହ୍ମଣ କାବା ହୋଇଗଲା । ବ୍ରାହ୍ମଣୀ କହିଲା, "ଶୁଣ । ଆଜି ରାତିରେ ତମେ ବି କୁରାଢ଼ୀ ଧରି ଦିଅଁଙ୍କୁ ହାଣିବାକୁ ଉଦ୍ୟତ ହୁଅ । ଦିଅଁ ତମକୁ ବି ଅର୍ଥଲାଭର ପନ୍ଥା ବତାଇ ଦେବେ ।"

"ନା, ନା, ମୁଁ ଏଭଳି କାମ କରିପାରିବି ନାହିଁ ।" ବ୍ରାହ୍ମଣ କହିଲେ ।

"ଅରେ ମାତ୍ର ଏତିକି କଲେ ସାରା ଜୀବନ ଆରାମରେ କାଳ କାଟୁଥିବା । ଏହା କ'ଣ କମ୍ କଥା?" ବ୍ରାହ୍ମଣୀ କହିଲେ ।

ବ୍ରାହ୍ମଣ ରାତିଯାକ ଶୋଇ ପାରିଲେ ନାହିଁ । ଶେଷ ରାତିରେ ଠିକ୍ କଲେ କି ସେ କାଠୁରିଆ ଭଳି କାମ କଦାପି କରିବେ ନାହିଁ । କିନ୍ତୁ ସକାଳ ହେବାରୁ ଯେତେବେଳେ କାଠୁରିଆର ଧନ ସମ୍ପତ୍ତି ଉପରେ ତାଙ୍କ ଆଖି ପଡ଼ିଲା, ସେ ପୁଣି ଭାବିଲେ, "ଧନ ଲାଭର ସହଜ ଉପାୟ

କାଣି ମଧ୍ୟ ତାକୁ ଅବଲମ୍ବନ ନ କରିବା ମୋ ପକ୍ଷରେ ବୋକାମି ଛଡ଼ା ଆଉ କ'ଣ ହୋଇପାରେ ?"

ବ୍ରାହ୍ମଣ ଅନେକ ଦ୍ୱିଧା ସତ୍ତ୍ୱେ ମଝି ରାତରେ କୁରାଢ଼ୀ ଧରି ମନ୍ଦିରରେ ପଶିଲେ ଓ ଦେଅଁଙ୍କ ଆଗରେ ଠିଆ ହେଲେ । ଗୋଡ଼ ହାତ ଥରୁଥାଏ । କୌଣସି ମତେ ସେ କୁରାଢ଼ୀ ଉଠାଇଲେ । ସେତିକିବେଳେ ଦୀପ ଆଲୁଅରେ ଦେଅଁଙ୍କ ମୁହଁ ଝଲସି ଉଠିଲା । ଆର୍ତ୍ତନାଦ କରି ବ୍ରାହ୍ମଣ ତଳେ ପଡ଼ିଗଲେ ।

ସେହି ଚେତାଶୂନ୍ୟ ଅବସ୍ଥାରେ ସେ ଶୁଣିଲେ ଗୋଟିଏ ମଧୁର କଣ୍ଠ, "ହାଇରେ, ତୁ କ'ଣ କେବେ ବି ମୋତେ ଚିହ୍ନି ପାରନୁ ? ତୋ ପଡ଼ୋଶୀ ଆଖିରେ ମୁଁ କାଠ ଛଡ଼ା ଆଉ କିଛି ନୁହେଁ । ସେ ଅଜ୍ଞାନୀ । କିନ୍ତୁ ତୁ ଜାଣୁ ଯେ କାଠ ବିଗ୍ରହ ରୂପରେ ଯିଏ ପୂଜା ପାଏ ସିଏ ଦେଅଁ । ତୁ ଭକ୍ତ । ତାକୁ ଯେପରି ବ୍ୟବହାର କରିଗଲ, ତୋ ପ୍ରତି କ'ଣ ସେହିପରି ବ୍ୟବହାର କରାଯାଇ ପାରନ୍ତା ?"

ବ୍ରାହ୍ମଣ ଚେତା ଫେରି ପାଇ ଦେଅଁଙ୍କୁ ପ୍ରଣିପାତ କରି ଘରକୁ ଫେରିଲେ । ତାଙ୍କ ସ୍ତ୍ରୀ ଉଦ୍‌ବିଗ୍ନ ହୋଇ ଅପେକ୍ଷା କରୁଥିଲେ । "କ'ଣ ହେଲା ?" ସେ ଭୟପୂର୍ଣ୍ଣ କଣ୍ଠରେ ପଚାରିଲେ ।

ବ୍ରାହ୍ମଣ ଅଶ୍ରୁ ମୋଚନ କରି କହିଲେ, "ମୋ ଭଳି ମୂଢ଼ ପ୍ରତି ଈଶ୍ୱରଙ୍କର ଅଶେଷ ଦୟା ଯେ ମୁଁ ଆଜି ତାଙ୍କ ବାଣୀ ଶୁଣି ପାରିଲି । ଭଗବାନ ଆମକୁ ଯେମିତି ରଖିଛନ୍ତି, ଆମେ ସେମିତି ରହିବା । କାହା ସହ ଆମ ଅବସ୍ଥାର ତୁଳନା କରିବା ଲୋଡ଼ା ନାହିଁ ।"

ବ୍ରାହ୍ମଣୀ ମଧ୍ୟ ଲୁହ ପୋଛି କହିଲେ, "ଠିକ୍ । ତୁମେ ବାହାରିଯିବା ପରଠୁଁ ମୁଁ ନିଜକୁ ଧିକ୍‌କାର ଦେଉଛି । ମୁଁ ଅଧମ ବୋଲି ତମକୁ ସେଭଳି କାମ କରିବାକୁ ପରାମର୍ଶ ଦେଇଥିଲି ସିନା ! କିନ୍ତୁ ଈଶ୍ୱର ସ୍ୱୟଂ ଆମକୁ ମହାପାପରୁ ରକ୍ଷା କଲେ ।






# ବୋକା ନା ଭଦ୍ର?

ସୁମଥବାବୁ ବାହାରିଥିଲେ ନିଜ କନ୍ୟା ସକାଶେ ବର ଖୋଜିବା ନିମନ୍ତେ ।

"ତମେ ଆଜି ରାତିରେ ରହିବ କେଉଁଠି?" ସ୍ତ୍ରୀ ପଚାରିଲେ । କାରଣ ସହରରେ ସୁମଥବାବୁ ସେଦିନ ପହଞ୍ଚି ପାରିବେ ନାହିଁ ।

"ବାଟରେ ହରିପୁରଠିଁ ମୋ ସାଙ୍ଗ ଦିବାକର ଘରେ ରହିଯିବି ।" ସୁମଥବାବୁ କହିଲେ ।

"ତମେ ଯଦି ଦିବାକରଙ୍କ ଘରେ ରହିବ, ତେବେ ତାଙ୍କ ପୁଅ ରବିଶଙ୍କର ସହ ପ୍ରସ୍ତାବ ପକାଇବ ନାହିଁ କାହିଁକି? ତାକୁ ପିଲବେଳେ ଦେଖିଥିଲି । ଭାରି ଭଲ ପିଲା!" ସୁମଥବାବୁଙ୍କ ସ୍ତ୍ରୀ କହିଲେ ।

"ଭଲ ପିଲା ନା ଆଉ କିଛି! ସେ ଅତ୍ୟନ୍ତ ବୋକା । ତା' ବାପା ତାକୁ ସବୁବେଳେ ବକିବାର ମୁଁ ଶୁଣେ ।"

"ଅବଶ୍ୟ ରବିଶଙ୍କରକୁ ମୁଁ ଥରେ ମାତ୍ର ଦେଖିଥିଲି । ତା' ସ୍ୱଭାବ କିପରି ଜାଣେ ନାହିଁ । ତେବେ ତମ ବନ୍ଧୁ ଦିବାକର ଭୀଷଣ ବଦ୍‌ରାଗୀ ।" ସ୍ତ୍ରୀ କହିଲେ ।

"ସେକଥା ନ ଜାଣେ କିଏ? ସେ ବଦ୍‌ରାଗୀକୁ ତା ପୁଅ ବୋକା!" ସୁମଥବାବୁ ଉତ୍ତର ଦେଲେ ।

ସ୍ତ୍ରୀ ଆଉ କିଛି କହିଲେ ନାହିଁ । ସୁମଥବାବୁ ଯାଇ ସନ୍ଧ୍ୟା ସୁଦ୍ଧା ବନ୍ଧୁ ଦିବାକରଙ୍କ ଘରେ ପହଞ୍ଚିଲେ । ହାତଗୋଡ଼ ଧୋଇ ସାରି ପଚାରିଲେ, "ରବିଶଙ୍କର କାହିଁ?"

"ଆରେ ଭାଇ, ସେ ବୋକା କଥା ଲୁହନା । ଝିଅ ଘରକୁ ବେଭର ପଠାଇବି ବୋଲି ତାକୁ ଆମ୍ବ କିଣିବାକୁ ପଠାଇଛି । ସେ ଆମ୍ବ ବଦଳରେ ଓଲୁଅ ନ ଆଣିଲେ ରକ୍ଷା ।"

ସୁରେନ୍ଦ୍ର



ସୁମଥ ଟିକିଏ ବିଶ୍ରାମ କରି କହିଲେ, "ମୁଁ ଟିକିଏ ବୁଲିବୁଲି କରି ଆସେଁ ନଈ କୂଳରୁ।"

ସୁମଥବାବୁ ବାହାରି ଯିବାର ଘଣ୍ଟାକ ପରେ ରବିଶଙ୍କର ଲେଉଟି ଆସିଲା।

"କିରେ, ଆମ୍ବ ପାଇଲୁ?" ଦିବାକର ପଚାରିଲେ।

"ହଁ। ତେବେ ବହୁତ ଦୂର ସ୍ଥାନରୁ ଆଣିବାକୁ ହେଲା।" ରବିଶଙ୍କର କହିଲା।

"କ'ଣ ଦର ଦେଲୁ?" ସନ୍ଦେହମିଶ୍ରିତ କଣ୍ଠରେ ଦିବାକର ପଚାରିଲେ।

"ଦଶଟଙ୍କା ଦେଇ ପଚିଶ ଆମ୍ବ ଆଣିଲି।"

"କ'ଣ କହିଲୁ? ଦଶଟଙ୍କା? ତୋ ମୁଣ୍ଡ ଖରାପ କରେ? ତୋତେ ପରା ମୁଁ କହିଥିଲି ଶସ୍ତାରେ ପାଇଲେ ଆଣିବୁ ବୋଲି?" କଡ଼ା କଣ୍ଠରେ ଦିବାକର ପଚାରିଲେ।

"ବାପା, ଶସ୍ତାର ଅର୍ଥ କ'ଣ? ଆଖପାଖରେ ଏଭଳି ଆମ୍ବ ମିଳୁ ନାହିଁ। ମଙ୍ଗଳପୁରରେ ବୁଝିଲି, ପଚିଶ ଆମ୍ବକୁ କୋଡ଼ିଏ ଟଙ୍କା ପଡ଼ିବ। ସେଥିପାଇଁ ମୁଁ ସେଠାରୁ ଏକ କ୍ରୋଶ ଦୂରକୁ ଯାଇ ସୁଦାମ ଚୌଧୁରୀଙ୍କ ବଗିଚାରୁ କିଣିଲି। ତେଣୁ ଏହା ଶସ୍ତା ହେଲା ନାହିଁ ବୋଲି କହିହେବ ନାହିଁ।" ରବିଶଙ୍କର ଦୃଢ଼ ସ୍ୱରରେ ଉତ୍ତର ଦେଲା, କିନ୍ତୁ ତା' କଥାରେ ବିରକ୍ତି ବା ଅଝାଳିଆ ଭାବ ନଥାଏ।

"ଚୁପ୍! ତୋତେ ଏତେ କଥା କିଏ ପଚାରୁଛି? ତୁ ଏମିତି ବୋକା ବୋଲି ଆଜିଯାଏ ତୋତେ କେହି କନିଆ ଦେବାକୁ ଆଗଭର ହୋଇ ନାହାନ୍ତି। ବୁଝିଲୁ?" ଦିବାକର ଚିଡ଼ି ଯାଇ କହିଲେ।

"ବାପା! ସତକଥା କ'ଣ ଜାଣ? ତୁମେ ଯଦି ମୋତେ ସମସ୍ତଙ୍କ ଆଗରେ ବୋକା ବୋଲି କହିବ, ତେବେ କିଏ କପରି କନିଆ ଦେବାକୁ ଆସିବ? ଅବଶ୍ୟ ମୁଁ ବିଭା ହେବାକୁ ଅଧୀର ନୁହେଁ।" ସଂଯତ କଣ୍ଠରେ ହସି ହସି ରବିଶଙ୍କର କହିଲା। ସେତିକିବେଳେ ବାରନ୍ଦାରେ କେହି କାଶିବାର ଶବ୍ଦ ଶୁଭିଲା। ରବିଶଙ୍କର ଓ ଦିବାକର ଚୁପ୍ ହୋଇଗଲେ। ଭିତରକୁ ପଶି ଆସିଲେ ସୁଦାମବାବୁ। ରବିଶଙ୍କର ତାଙ୍କୁ ନମସ୍କାର କଲା। ସୁଦାମବାବୁ

ଖୁସି ହୋଇ କହିଲେ, "ଆରେ ରବି, ତୁ କେତେବେଳେ ଆସିଲୁ ?"

"ଏଇ ଟିକିଏ ଆଗରୁ ଆଜ୍ଞା । ଆପଣ ?"

"ମୁଁ ଆସିଲି ଘଣ୍ଟାଏ ଦେଢ଼ଘଣ୍ଟା ହେବ । ଯାଇଥିଲି ନନ୍ଦକୂଳ ଆଡ଼େ ।"

"ଭଲ କଥା । ଆପଣ ତ ସବୁଥର ଖାଲି ସହରକୁ ଯିବା ବାଟରେ ମୁହଁ ମାରିଦେଇ ଚାଲିଯା'ନ୍ତି । ଏଥର ଅନ୍ତତଃ ଦିନଟିଏ ରହିବେ ତ ?" ରବିଶଙ୍କର ପଚାରିଲା ।

"ଅନ୍ତତଃ ଆଜି ରାତିକ ରହିବି । ମୁଁ ସହରକୁ ଯାଉ ନାହିଁ । ଏଇଠିକୁ ଆସିଛି । ଏଇଠୁ ଘରକୁ ଲେଉଟି ଯିବି । ତୋ ବାପା ସହ ବିଶେଷ କଥା ଅଛି ।"

"ମୋ ସହ କଥା ଅଛି ? କାହିଁ, ସେକଥା ତ କହିନାହିଁ । ମୁଁ ବି ଭାବିଛି ତମେ ସକାଳେ ସହରକୁ ଯିବ !" ଦିବାକର କହିଲେ ।

"କଥା ହେଲା, ମୋ ଝିଅ ସହ ରବିଶଙ୍କରର ବିବାହ ପ୍ରସ୍ତାବ ଧରି ମୁଁ ଆସିଛି । କ'ଣ ତମର ଏଥରେ ସମ୍ମତି ଅଛିଟି ?" ସୁମଥବାବୁ କଟମଟ କରି ଦିବାକରଙ୍କ ଆଡ଼େ ଅନାଇଲେ ।

"ସୁମଥ ! ତମ ଝିଅ ମୋ ଘରକୁ ଆସିବ, ଏଥିରେ ମୋର ଆପତ୍ତି କରିବାର ପ୍ରଶ୍ନ କେଉଁଠି ?" କହିଲେ ଦିବାକର ।

"ବେଶ୍, ବେଶ୍ । ଧନ୍ୟବାଦ ।"

ପରଦିନ ସୁମଥବାବୁ ଗାଁକୁ ଫେରିଗଲେ ; ତାଙ୍କ ସ୍ତ୍ରୀ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ଏଡ଼େ ଶୀଘ୍ର କ'ଣ ପଳେଇ ଆସିଲ ?"

"ପ୍ରସ୍ତାବ ପକ୍କା ହୋଇଗଲା—ଉପଯୁକ୍ତ ବରପାତ୍ର ସହ !"

"କିଏ ସେ ?" ସ୍ତ୍ରୀ କୌତୁହଳୀ ହେଲେ ।

"ରବିଶଙ୍କର । ସେ ବୋକା ନୁହେଁ, ଅତ୍ୟନ୍ତ ଭଦ୍ର । ଦିବାକରଟା ହୁଣ୍ଡା । ମୁଁ ନେପଥ୍ୟରୁ ବାପାପୁଅଙ୍କ କଥାବାର୍ତ୍ତା ଶୁଣିଦେଲି । ରବିଶଙ୍କର ସମ୍ପର୍କରେ ମୋର ଧାରଣା ବଦଳିଗଲା ।" ହୃଷ୍ଟ ଭାବରେ କହିଲେ ସୁମଥବାବୁ । ତାଙ୍କ ସ୍ତ୍ରୀଙ୍କ ମୁହଁରେ ବି ଆନନ୍ଦ ଫୁଟି ଉଠିଲା ।





# ବୋଧିସତ୍ତ୍ୱ ଓ ବ୍ରହ୍ମରାକ୍ଷସ

ଯେତେବେଳେ ବ୍ରହ୍ମଦତ୍ତ କାଶୀନଗରୀ ଉପରେ ରାଜୁତି କରୁଥିଲେ, ସେତେବେଳେ ବୋଧିସତ୍ତ୍ୱ ଗୋଟିଏ ବଣିକ ପରିବାରରେ ଜନ୍ମ ଗ୍ରହଣ କରିଥିଲେ । ବୋଧିସତ୍ତ୍ୱଙ୍କ ପିତା ଜଣେ ନ୍ୟାୟପରାୟଣ ବଣିକ ଥିଲେ ଏବଂ ପୁତ୍ରର ଉପଯୁକ୍ତ ଶିକ୍ଷାଲାଭ ନିମନ୍ତେ ବୋଧିସତ୍ତ୍ୱଙ୍କୁ ବାରାଣସୀରେ ଅବସ୍ଥିତ ଗୋଟିଏ ବିଖ୍ୟାତ ଗୁରୁକୁଳରେ ନେଇ ଛାଡ଼ିଥିଲେ ।

ଗୁରୁକୁଳରେ ଶିକ୍ଷା ସମାପନ କରି ଯେତେବେଳେ ବୋଧିସତ୍ତ୍ୱ ଗୃହକୁ ପ୍ରତ୍ୟାବର୍ତ୍ତନ କଲେ, ସେତେବେଳେ ପିତା ତାଙ୍କୁ କହିଲେ, "ପୁତ୍ର! ହମେ ମୋର ବୟସ ଆସି ବାର୍ଦ୍ଧକ୍ୟରେ ଉପନୀତ ହେଲାଣି । ମୁଁ ଆଉ କେତେଦିନ ବାଣିଜ୍ୟ ଚଳାଇ ପାରିବି ? ମୋର ଇଚ୍ଛା, ତୁ ମୋ ସାଥିରେ ଚାଲ । ଦୂରଦୂରାନ୍ତରର ଯେଉଁ ସବୁ ବଣିକମାନଙ୍କ ସହ ମୋର ସମ୍ପର୍କ ରହିଛି, ସେମାନଙ୍କ ସହ ତୋର ପରିଚୟ କରାଇଦେବି । ଭବିଷ୍ୟତରେ ସେମାନେ ତୋ ସହ କାରବାର କରିବେ ।"

ବଣିକଙ୍କ ପ୍ରସ୍ତାବରେ ବୋଧିସତ୍ତ୍ୱ ଅସମ୍ମତ ହେବାର ପ୍ରଶ୍ନ ନ ଥିଲା । ଯଥାଶୀଘ୍ର ପିତାପୁତ୍ର ଅନେକ ମଣିମାଣିକ୍ୟ ଧରି ସେସବୁ ଅନ୍ୟତ୍ର ବିକ୍ରୟ କରିବା ନିମନ୍ତେ ବାହାରି ପଡ଼ିଲେ ।

ସେମାନେ ପ୍ରାୟ ଛଅମାସ କାଳ ବହୁ ଗ୍ରାମ ନଗରୀ ଭ୍ରମଣ କଲେ । ମଣିମାଣିକ୍ୟ ବିକ୍ରୟ ହେବା ସଙ୍ଗେ ସଙ୍ଗେ ବୋଧିସତ୍ତ୍ୱଙ୍କ ସହ ଅନ୍ୟ ବଣିକମାନଙ୍କର ପରିଚୟ ହେଲା ।

ତା'ପରେ ପିତାପୁତ୍ର ନିଜ ସହର ଅଭିମୁଖେ ଯାତ୍ରାରମ୍ଭ କଲେ । ବାଟରେ ଦିନେ ସେମାନେ ଗୋଟିଏ ନଗରୀର ସୀମାରେ ଆସି ପହଞ୍ଚିବା ବେଳକୁ ସଞ୍ଜ ହୋଇ ଯାଇଥାଏ । ସେ

ନଗରୀକୁ ବେଷ୍ଟନ କରିଥାଏ ଗୋଟିଏ ଉଚ୍ଚ ପ୍ରାଚୀର । ପିତାପୁତ୍ର ସେଠାରେ ପହଞ୍ଚିବା ବେଳକୁ ନଗରୀର ଫାଟକ ସେଦିନ ସକାଶେ ବନ୍ଦ ହୋଇ ଗଲାଣି ।

ଫାଟକ ଜଗିଥିବା ପ୍ରହରୀକୁ ବଣିକ କହିଲେ, "ଭଦ୍ରେ! ଆମ ପାଇଁ ଦ୍ୱାର ଖୋଲିଦିଅ ।"

ପ୍ରହରୀ କହିଲା, "ମହାଶୟ, ଆପଣ ଯେ ସମ୍ଭ୍ରାନ୍ତ ଲୋକ, ତାହା ଆପଣଙ୍କ କଥାବାର୍ତ୍ତା ଓ ବେଶଭୂଷାରୁ ମୁଁ ବୁଝି ପାରୁଛି । କିନ୍ତୁ ରାଜାଙ୍କ ଆଦେଶ ଆଜିକାଲି ସୂର୍ଯ୍ୟାସ୍ତ ହେବା ମାତ୍ରେ ପ୍ରାଚୀର ଦ୍ୱାର ବନ୍ଦ କରିବାକୁ ହେବ । ସୂର୍ଯ୍ୟୋଦୟ ବେଳେ ଯାଇ ଦ୍ୱାର ଖୋଲା ହେବ । ଏଥିରେ ଅନ୍ୟଥା କଲେ ମୋର ପ୍ରାଣ ଯିବ ।"

ବଣିକ ଚିନ୍ତିତ ଭାବରେ କହିଲେ, "ବଡ଼ ଅସୁବିଧା ହେଲା ତ! ନଗରୀ ଭିତରେ କୌଣସି ଚଟିଘରେ ଯାଇ ଆମେ ଖିଆପିଆ କରିବୁ ବୋଲି ଭାବିଥିଲୁଁ । ବର୍ତ୍ତମାନ କ'ଣ କରାଯିବ ?"

ପ୍ରହରୀ କହିଲା, "ମହାଶୟ, ମୋ କୁଡ଼ିଆ ଏଇଠି । ମୋଠି ରୋଷେଇବାସ କରିବା ନିମନ୍ତେ ସାଜସରଞ୍ଜାମ ଅଛି । ପାଣି ମଧ୍ୟ ରହିଛି । କିନ୍ତୁ କୌଣସି ଖାଦ୍ୟସାମଗ୍ରୀ ନାହିଁ । ଆପଣଙ୍କ ପାଖରେ ଯଦି ଖାଦ୍ୟ ସାମଗ୍ରୀ ଅଛି, ଆପଣ ମୋ କୁଟୀରରେ ରୋଷେଇ କରି ଖାଇନେଇ ପାରନ୍ତି ।"




ବଣିକଙ୍କ ପାଖରେ କିଛି ଖାଦ୍ୟ ପଦାର୍ଥ ଥିଲା । ପିତା ପୁତ୍ର ପ୍ରହରୀର କୁଡ଼ିଆରେ ରୋଷେଇ କଲେ ଓ ଖିଆପିଆ କଲେ । କିନ୍ତୁ ସେ କୁଡ଼ିଆରେ ଶୋଇଲା ଭଲି ସ୍ଥାନ ନଥିଲା । ସେଠି ପୁଣି ପ୍ରହରୀର ସହକାରୀ ଆସି ଶୋଇବା କଥା ।

ପ୍ରହରୀକୁ ତା' ସହାନୁଭୂତି ସକାଶେ ଧନ୍ୟବାଦ ଦେଇସାରି ବଣିକ ପଚାରିଲେ, "ଭଦ୍ରେ! ଏଠି ରାତି ଯାପନ ସକାଶେ କୌଣସି ଗୃହ ନାହିଁ ?"

"ମହାଶୟ, ସବୁ ଅତିଥିଶାଳା ପ୍ରାଚୀର ସେପଟେ । ଏପଟେ କିଛି ନାହିଁ । ତେବେ ଆପଣ ଇଚ୍ଛା କଲେ ପଶ୍ଚିମ ଦିଗରେ ଦିଶୁଥିବା



ଘରେ ଯାଇ ରାତି ଯାପନ କରି ପାରନ୍ତି— ସାହସ ଥିଲେ ।" ପ୍ରହରୀ କହିଲା ।

"ସେଥିସକାଶେ ସାହସର ପ୍ରୟୋଜନ କ'ଣ ?" ବଣିକ ପଚାରିଲେ ।

ପ୍ରହରୀ ଟିକିଏ ସଙ୍କୋଚ କରି କହିଲା, "ସେ ଘରେ ଗୋଟିଏ ବ୍ରହ୍ମରାକ୍ଷସ ରହେ । ସେଥିପାଇଁ କେହି ତା' ପାଖ ମାଡ଼ନ୍ତି ନାହିଁ ।"

"କାହିଁକି ? ବ୍ରହ୍ମରାକ୍ଷସକୁ ଲୋକେ ଭୟ କରିବାର କାରଣ କ'ଣ ?" ବୋଧିସତ୍ତ୍ୱ ପଚାରିଲେ ।

"ଆପଣ କହୁଛନ୍ତି କ'ଣ ? ବ୍ରହ୍ମରାକ୍ଷସକୁ ଭୟ କରିବେ ନାହିଁ ? ଜାଣନାହିଁ, ଯିଏ ଏ ବ୍ରହ୍ମରାକ୍ଷସ ହାବୁଡ଼ରେ ପଡ଼ୁଥିଲା, ସେ ମରୁଥିଲା । ଖାଲି ସେ ଘରେ ନୁହେଁ, ସନ୍ଧ୍ୟା ପରେ ଏ ଆଖପାଖରେ ବ୍ରହ୍ମରାକ୍ଷସ ଯାହାକୁ ଦେଖୁଥିଲା ତା'ର ପ୍ରାଣନାଶ କରୁଥିଲା । ଗତ କେତେବର୍ଷ ହେଲା ତା'ର ଉପଦ୍ରବ କମ୍ ହୋଇଛି ସତ, ତଥାପି ଗଲବର୍ଷ ସେ ଜଣକୁ ମାରିଥିବାର ଆମେ ଜାଣୁ । ଅନେକ ସମୟରେ ମୁଁ ତାକୁ ଦୂରରୁ ଦେଖିଛି । ତା' ଚେହେରା ଦେଖିଲେ ଯେ କୌଣସି ମଣିଷ ଛାନିଆ ହୋଇ ପଡ଼ିବ ।" ପ୍ରହରୀ ବୁଝାଇ ଦେଲା ।

ବଣିକ ଏକଥା ଶୁଣି ଚିନ୍ତାମଗ୍ନ ହେଲେ । କିନ୍ତୁ ବୋଧିସତ୍ତ୍ୱ କହିଲେ, "ପିତା ! ବ୍ରହ୍ମ-ରାକ୍ଷସକୁ ଭୟ ନାହିଁ । ପ୍ରୟୋଜନ ହେଲେ ତାକୁ ଜବ୍ଦ କରିବା ଭଳି ଶକ୍ତି ମୋର ଅଛି ।"

ବଣିକ ଜାଣିଥିଲେ ଯେ ବୋଧିସତ୍ତ୍ୱ କେତେବେଳେ ହେଲେ ବୃଥା ଆସ୍ଫାଳନ କରନ୍ତି ନାହିଁ । ତେଣୁ ସେ ପୁତ୍ରଙ୍କୁ ଅନୁସରଣ କରି ସେ ପରିତ୍ୟକ୍ତ ଘରକୁ ଗଲେ ।

ସେଠାରେ ପିତା ପୁତ୍ର ଶୋଇବାର ବ୍ୟବସ୍ଥା କରୁଛନ୍ତି, ବୋଧିସତ୍ତ୍ୱ ଲକ୍ଷ୍ୟ କରି ଦେଖିଲେ, ବ୍ରହ୍ମରାକ୍ଷସ ଗୋଟିଏ ଅନ୍ଧାରୁଆ କୋଣରେ ଠିଆ ହୋଇ ସେ ଦୁହିଁଙ୍କୁ ଲକ୍ଷ୍ୟ କରୁଛି । ବୋଧିସତ୍ତ୍ୱ ବୁଝିପାରିଲେ ଯେ ସେ କିଛି ଗୋଟାଏ ଘଟିବାକୁ ଅପେକ୍ଷା କରିଛି । ତାହା ଘଟିଲେ ଯାଇ ସେ ସେମାନଙ୍କୁ ଖାଇବାକୁ ଉଦ୍ୟତ ହେବ ।




ସେତକବେଳେ ବଣିକ ଛିଙ୍କିଲେ । ସଙ୍ଗେ ସଙ୍ଗେ ବ୍ରହ୍ମରାକ୍ଷସ ମୁହଁରେ ଆହ୍ଲାଦ ଦେଖାଦେଲା । ସେ ତାଙ୍କଆଡ଼େ ମାଡ଼ ଆସିଲା ।

ବୋଧିସତ୍ତ୍ୱ ଇଚ୍ଛା କରିଥିଲେ ନିଜ ଶକ୍ତି ବଳରେ ତାକୁ ଅଟକାଇ ପାରିଥାନ୍ତେ । କିନ୍ତୁ ତାହା ନକରି ସେ କହିଲେ, "ସତ୍ ସତ୍ !"

ସଙ୍ଗେ ସଙ୍ଗେ ବ୍ରହ୍ମରାକ୍ଷସ ଅଟକିଗଲା । ତା' ମୁହଁରେ ହତାଶା ଦେଖାଦେଲା । ସେ ବୁଲିପଡ଼ି ପ୍ରାଚୀର ଆଡ଼େ ଚାଲିଯିବାକୁ ଲାଗିଲା ।

ମଜା ଦେଖିବା ନିମନ୍ତେ ବୋଧିସତ୍ତ୍ୱ ନାକରେ ଖଣ୍ଡିଏ କନା ଦେଇ ଛିଙ୍କିଲେ । ତତ୍‌କ୍ଷଣାତ୍ ବ୍ରହ୍ମରାକ୍ଷସ ବୁଲି ପଡି ତାଙ୍କ ଆଡ଼େ ଆଗେଇ ଆସିଲା । ତା' ମୁହଁରେ ଆଶା ଫୁଟି ଉଠିଥାଏ ।

କିନ୍ତୁ ବଣିକ କହିଲେ "ସତ୍ ସତ୍ !"

ସଙ୍ଗେ ସଙ୍ଗେ ବ୍ରହ୍ମରାକ୍ଷସ "ଧୁତ୍ତେରି !" କହି ବୁଲିପଡ଼ିଲା ଓ ଚାଲିଯିବାକୁ ଉଦ୍ୟତ ହେଲା ।

ବୋଧିସତ୍ତ୍ୱ ପଛରୁ ଡାକିଲେ, "ହେ ବ୍ରହ୍ମ-ରାକ୍ଷସ! ଆସୁଥିଲ ଯଦି, କଥା ନାହିଁ, ବାର୍ତ୍ତା ନାହିଁ ଚାଲିଯାଉଛ କାହିଁକି ?"

ବ୍ରହ୍ମରାକ୍ଷସ ଧିରେ ଧିରେ ପଛକୁ ବୁଲି ଅନାଇଲା । ସେ ଦେଖିଲା ବୋଧିସତ୍ତ୍ୱଙ୍କ ମୁହଁରେ ଅପୂର୍ବ ଦ୍ୟୁତି । ବୋଧିସତ୍ତ୍ୱ ଯେ ଜଣେ ମହାନ ବ୍ୟକ୍ତି, ଏକଥା ସେ ବୁଝି ପାରିଲା ।

ସେ ଧିରେ ଧିରେ ଆସି ବୋଧିସତ୍ତ୍ୱଙ୍କୁ ପ୍ରଣାମ କଲା ।

"ତମେ ଆମ ଭିତରୁ ଜଣକୁ ଉଦରସ୍ଥ କରିବାକୁ ଚାହୁଁଥିଲ, କିନ୍ତୁ ତାହା ନକରି ଲେଉଟି ଗଲ କାହିଁକି ?" ବୋଧିସତ୍ତ୍ୱ ପଚାରିଲେ ।

"ଦିନଥିଲା, ମୁଁ ଯାହାକୁ ମନ ତାହାକୁ ଧରି ଖାଇ ଯାଉଥିଲି । ସ୍ୱେଚ୍ଛାରେ ପାର୍ଶ୍ୱବର୍ତ୍ତୀ ଅରଣ୍ୟରେ ବିଚରଣ କରୁଥିଲି । ଦିନେ ସନ୍ଧ୍ୟାବେଳେ ନଈ କୂଳରେ ଜଣେ ଏକାକୀ ପଥିକକୁ ଦେଖି ଯେମିତି ଧରିବାକୁ ଯାଇଛି, ସେ ପଥିକ କ'ଣ କଲେ କେଜାଣି, ମୁଁ ଛିଟିକି ହୋଇ ଖଣ୍ଡେ ଦୂରରେ ଯାଇ ପଡ଼ିଲି ।

ଅନାଇ ଦେଖିଲି, ସେ ଜଣେ ସନ୍ନ୍ୟାସୀ । ସେ କହିଲେ, 'ମୁଁ ଧ୍ୟାନ କରିବାକୁ ଯାଉଥିଲି, ତୋର ଏତେ ବଡ଼ ସାହସ, ତୁ ମୋତେ ଖାଇବାକୁ ବସିଲୁ? ମୁଁ ଶାପ ଦେଲି, ଏଣିକି ତୁ ମଣିଷ ଖାଇ ପାରିବୁ ନାହିଁ । ଖାଇଲେ ଜଳି ପାଉଁଶ ହୋଇଯିବୁ ।' ମୁଁ କାକୁତିମିନତି କରି କହିଲି, 'ଆପଣ ଏମିତି ଶାପ ଦେଲେ ଚଳିବ? ମୋ ପ୍ରତି ଦୟା କରନ୍ତୁ ।' ସନ୍ନ୍ୟାସୀ ଦୟା କରି କହିଲେ, 'ହେଲା, ଯଦି କେହି ତୋ ଆଗରେ ଛିଙ୍କିବ, ତାକୁ ଖାଇ ପାରିବୁ । କିନ୍ତୁ ଜଣେ ଛିଙ୍କିବା ସଙ୍ଗେ ସଙ୍ଗେ ସେ ନିଜେ ଅଥବା ତା' ପାଖରେ ଥିବା କେହି ଲୋକ ଯଦି ସତ୍ ସତ୍ କହିବ, ତେବେ ତୋ ଖାଇବା କଥା ହେବ ନାହିଁ ।' ସେହି ଦିନରୁ ମୁଁ ପ୍ରାୟ ଅନାହାରରେ ରହିଛି । ବର୍ଷକରେ ଥରେ ଗୋଟିଏ ମଣିଷ ଖାଇବାର ସୁଯୋଗ ଜୁଟେ କି ନାହିଁ ।" ଦୁଃଖ କରି ବ୍ରହ୍ମରାକ୍ଷସ କହିଲା ।

"ମଣିଷ ଖାଇବାକୁ ତୁମେ ସୁଯୋଗ ବୋଲି ମଣୁଛ । ସେଥିପାଇଁ ଏତେ ଦୁଃଖ । ତମେ ମନରୁ ସେ ଧାରଣା ଦୂର କରିଦିଅ । ମଣିଷ ଖାଇବା ବଡ଼ ପାପ । ତମେ ବ୍ରହ୍ମରାକ୍ଷସ । ତମର ସ୍ଥୂଳ ଖାଦ୍ୟ ଆବଶ୍ୟକ ନାହିଁ । ଏତିକି ବୁଝି ପାରୁନାହଁ କାହିଁକି?" ବୋଧିସତ୍ତ୍ୱ କହିଲେ ।

ବ୍ରହ୍ମରାକ୍ଷସ ନୂଆ କରି ସେକଥା ବୁଝିଲା ଓ ବୋଧିସତ୍ତ୍ୱଙ୍କ ପ୍ରତି କୃତଜ୍ଞତା ପ୍ରକଟ କଲା । ପରଦିନ ବଣିକ ଓ ବୋଧିସତ୍ତ୍ୱ ସେ ନଗରର ରାଜାଙ୍କୁ ଭେଟିଲେ । ବ୍ରହ୍ମରାକ୍ଷସକୁ ନେଇଯାଇ ବୋଧିସତ୍ତ୍ୱ ରାଜାଙ୍କ ସହ ଭେଟ କରାଇ ଦେଲେ । ନରଖାଦକ ରୂପେ ସେ ଅଞ୍ଚଳରେ ସନ୍ତ୍ରାସ ସୃଷ୍ଟି କରିଥିବା ବ୍ରହ୍ମରାକ୍ଷସର ହୃଦୟ ପରିବର୍ତ୍ତନ ହୋଇଥିବାର ଜାଣି ରାଜା ବହୁତ ଖୁସି ହେଲେ । ବୋଧିସତ୍ତ୍ୱଙ୍କୁ ରାଜା ଅନୁରୋଧ କଲେ କି ସେ ତାଙ୍କର ମନ୍ତ୍ରୀ ହୋଇ ରହନ୍ତୁ । ବୋଧିସତ୍ତ୍ୱ ପିତାଙ୍କ ଅନୁମତି ନେଇ ସେ ଅନୁରୋଧ ରକ୍ଷା କଲେ ।





ଭାରତର ନଦନଦୀ

# କାବେରୀ

ଅନେକ ଅନେକ କାଳ ତଳେ ଥରେ ଦକ୍ଷୀଣ ଭାରତର ଚୋଳ ରାଜ୍ୟରେ ଭୀଷଣ ମରୁଡ଼ି ଦେଖାଦେଲା । ନଦୀ ଓ ସରୋବରମାନ ଶୁଖିଗଲେ । ଲୋକେ ବହୁତ କଷ୍ଟ ପାଇଲେ ।

ସେତେବେଳେ ରାଜୁତି କରୁଥିଲେ ଦଣ୍ଡମାନ । ସେ ଚିନ୍ତାରେ ଘାର ରହୁଥାନ୍ତି । ପ୍ରାସାଦର ଆନନ୍ଦ ଉଲ୍ଲାସ ବା ଦରବାରର ତର୍କବିତର୍କରେ ତାଙ୍କ ମନ ବସୁ ନଥାଏ ।





ମରୁଡ଼ିର କ'ଣ ପ୍ରତିକାର କରିବେ, ଏକଥା ଭାବି ଭାବି ସେ ପାଗଳ ପ୍ରାୟ ରାସ୍ତା ଘାଟରେ ଘୂରି ବୁଲିଲେ । ରାଜ୍ୟର ଅବସ୍ଥା ଦେଖି ତାଙ୍କ ଦୁଃଖ ଆହୁରି ବଢ଼ିଗଲା । ତାଙ୍କୁ ପ୍ରଜାମାନେ ଚିହ୍ନିପାରୁ ନଥାନ୍ତି ।



ମହର୍ଷି ଅଗସ୍ତ୍ୟ କିଛୁକାଳ ସହ୍ୟାଦ୍ରି ପର୍ବତମାଳା ଭିତରେ ଧ୍ୟାନସ୍ଥ ଥାଇ ତା'ପରେ ଲୋକାଳୟକୁ ବାହାରିଥାନ୍ତି । ଅଗସ୍ତ୍ୟ ସର୍ବଦା ଜନସାଧାରଣଙ୍କ କଲ୍ୟାଣ କାମନା କରୁଥିଲେ ଓ ସେ ଦିଗରେ ଉଦ୍ୟମ କରୁଥିଲେ ।

ଶୈଳ ରାଜ୍ୟ ଓ କୁଠକ (ଆଧୁନିକ କୁର୍ଗ) ରାଜ୍ୟ ସୀମାନ୍ତରେ ରାଜା ଦଣ୍ଡମାନ ତାଙ୍କୁ ଭେଟିଲେ । ପ୍ରଜାଙ୍କ ଦୁଃଖରେ ରାଜା ଏତେ ଦୁଃଖୀ ହେବାର ଦେଖି ଋଷିଙ୍କ ମନରେ ଗଭୀର ଅନୁକମ୍ପା ଜାତ ହେଲା ।





ସହ୍ୟାଦ୍ରି ପର୍ବତମାଳା କୁଠକ ରାଜ୍ୟରେ ଆସ୍ଥିତ ଥାଏ । ଅଗସ୍ତ୍ୟ ରାଜା ଦଣ୍ଡମାନଙ୍କୁ କୁଠକର ରାଜା କାବେରଙ୍କ ପାଖକୁ ନେଇଗଲେ ଓ ପ୍ରକାଶ କଲେ ଶୀଘ୍ର ସହ୍ୟାଦ୍ରି ଭିତରୁ ଏକ ନୂତନ ନଦୀ ଜନ୍ମ ନେବ ବୋଲି ସେ ଧ୍ୟାନ ବଳରେ ଜାଣି ପାରିଛନ୍ତି ।

ଋଷି ଅଗସ୍ତ୍ୟ ରାଜା କାବେରଙ୍କୁ କହିଲେ କି ସେ ଆଗତ ପ୍ରାଜ୍ଞ ନଦୀ ଯେପରି ଶୈଳ ଅଭିମୁଖେ ଧାବମାନ ହେବ, ସେ ବ୍ୟବସ୍ଥା କରିଯାଉ । ରାଜା କାବେର ସମ୍ମତ ହେଲେ । ସେ ଶ୍ରମିକ ବାହିନୀ ଧରି ପର୍ବତମାଳା ଭିତରେ ପଶିଲେ ।





ମହର୍ଷି ଅଗସ୍ତ୍ୟ ଆଗତ ପ୍ରାଜ୍ଞ ନଦୀର ଶକ୍ତିକୁ ଆରାଧନା କଲେ ଯଥାଶୀଘ୍ର ପର୍ବତମାଳାରୁ ନିର୍ଗତ ହେବାକୁ ନିବେଦନ କଲେ । ସେ ଏକାଗ୍ର ଚିତ୍ତରେ ପ୍ରାର୍ଥନା କରି ଚାଲିଲେ ।

ଯେତେବେଳେ ଋଷି ଜାଣି ପାରିଲେ ଯେ ତାଙ୍କ ପ୍ରାର୍ଥନା ଫଳିବାକୁ ଯାଉଛି, ସେତେବେଳେ ସେ ଶ୍ରମିକମାନଙ୍କୁ କାମ ଆରମ୍ଭ କରିଦେବାକୁ ନିର୍ଦ୍ଦେଶ ଦେଲେ । ନଦୀ ଧାରା ଯେପରି ଶୈଳ ଅଭିମୁଖେ ଧାବମାନ ହେବ, ସେଥି ଅନୁସାରେ ଶିଳାଖଣ୍ଡମାନ ଜମା କରାଗଲା ।





ଏକ ପୁଣ୍ୟ ମୁହୂର୍ତ୍ତରେ ନଦୀ ସ୍ରୋତ ଉଦ୍‌ଗତ ହେଲା । ଉପତ୍ୟକା ଭିତରରୁ ବହମାନ ହୋଇ ତାହା ଚୋଳ ରାଜ୍ୟ ଅଭିମୁଖେ କ୍ଷିପ୍ର ଗତିରେ ବହି ଚାଲିଲା । ରାଜା ଦର୍ଶମାନଙ୍କ ଆନନ୍ଦ କହିଲେ ନସରେ ।

କୁଠକ-ରାଜା କାବେରଙ୍କର ଥିଲେ ଏକ ସୁନ୍ଦରୀ କନ୍ୟା । ନାମ କାବେରୀ । ମହର୍ଷି ଅଗସ୍ତ୍ୟଙ୍କ ପରାମର୍ଶ ଅନୁସାରେ ନୂତନ ନଦୀର ନାମକରଣ ହେଲା କାବେରୀ ।






ଦୁଇଟି ପ୍ରାଚୀନ ରାଜ୍ୟ ଭିତରେ ସୌହାଦ୍ର୍ୟ ଓ ସହାନୁଭୂତିର ପ୍ରତୀକ ହେଲା କାବେରୀ ନଦୀ । ଏ ନଦୀ ଭାରତର ଅନ୍ୟତମ ପୁଣ୍ୟତୋୟା ନଦୀ । ଏହାକୁ ଦକ୍ଷୀଣର ଗଙ୍ଗା ବୋଲି ଅଭିହିତ କରାଯାଏ ।



# ଶ୍ରେଷ୍ଠ ବିଦ୍ୟା

ପ୍ରାଚୀନ କାଳର କଥା । ଗୋଟିଏ ଗ୍ରାମରେ ତିନୋଟି ତରୁଣ ବିଦ୍ୟାଶିକ୍ଷା ପାଇଁ ଗୁରୁକୁଳରେ ବାସ କରୁଥା'ନ୍ତି । ଗୁରୁ ଅନେକ ପ୍ରକାର ବିଦ୍ୟାରେ ପାରଦର୍ଶୀ ଥିଲେ । ତେଣୁ ବିଦ୍ୟାର୍ଥୀମାନେ ନିଜ ଇଚ୍ଛା ଅନୁସାରେ ଯେ କୌଣସି ବିଦ୍ୟା ଶିକ୍ଷା କରିପାରୁଥିଲେ । ଏଇ ତିନିଜଣ ତରୁଣ ତିନୋଟି ବିଦ୍ୟା ଅଭ୍ୟାସ କରୁଥା'ନ୍ତି । ଜଣେ ଜ୍ୟୋତିଷଶାସ୍ତ୍ର ପଢୁଥାଏ; ଦ୍ୱିତୀୟଟି ଆୟୁର୍ବେଦ ଓ ତୃତୀୟଟି ତର୍କଶାସ୍ତ୍ର ପଢୁଥାଏ । ଅନେକ ଦିନ ପରେ ଗୁରୁ ଦେଖିଲେ ତିନିଜଣ ନିଜ ନିଜ ବିଦ୍ୟାରେ ବେଶ୍ ପାରଦର୍ଶୀ ହୋଇ ଉଠିଲେଣି । ଏବେ ପରୀକ୍ଷା ନେବା ପରେ ସେମାନେ ଗୃହକୁ ଫେରିଯିବେ ।

ଦିନେ ଜଣେ ପ୍ରୌଢ଼ ବ୍ୟକ୍ତି ଗୋଟିଏ ଜାତକ ଧରି ପହଞ୍ଚିଲେ ଓ ଗୁରୁଙ୍କୁ କହିଲେ, "ଏଇ ଜାତକଟି ଯେଉଁ ଯୁବକର ତାକୁ ମୁଁ ଜାମାତା କରିବାକୁ ଚାହେଁ । ତା'ର ସବୁକିଛି ଭଲ । କେବଳ ଆପଣ ତା'ର ଜୀବନର ଶୁଭ ଅଶୁଭ କିଛି କହିଲେ ମୁଁ ବିବାହର ବନ୍ଦୋବସ୍ତ କରିବି ।"

ଗୁରୁ ଜାତକକୁ ଅଧ୍ୟୟନ କରି କହିଲେ, "ଏହି ଯୁବକର ଜାତକରେ ଅଛି ବିବାହ ଯୋଗ ସହିତ କୌଣସି ଦୁଷ୍ଟ ଗ୍ରହର ଦୃଷ୍ଟି ପଡୁଛି । ତେଣୁ ବିବାହ ହେବା ମାତ୍ରେହିଁ ସେ ଅସୁସ୍ଥ ହୋଇ ପଡ଼ିବ ।"

ଏପରି ଉତ୍ତର ଶୁଣି ଆଗନ୍ତୁକ ଟିକିଏ ଚିନ୍ତିତ ଦେଖାଗଲେ । ଗୁରୁ ଶିଷ୍ୟମାନଙ୍କୁ କହିଲେ, "ଏପରି ଅବସ୍ଥାରେ ତୁମମାନଙ୍କର ମତ କ'ଣ ?"

ତର୍କଶାସ୍ତ୍ରବାଲା କହିଲା, "ସମସ୍ତିଙ୍କ ଜାତକରେ ଶୁଭ ଅଶୁଭ ଦୁଇଟା ଅଛି । ଯଦି



ଅନ୍ୟ ସବୁ କିଛି ଅନୁକୂଳ ଅଛି ତେବେ ବିବାହ କରିବା ଉଚିତ୍ ।" ଚିକିତ୍ସା ଶାସ୍ତ୍ରବାଲା କହିଲା, "ଯୁବକ ଯଦି ଅସୁସ୍ଥ ହେବ ତେବେ ଭଲ ବୈଦ୍ୟ ଡକାଇ ଚିକିତ୍ସା କରାଯିବ । ରୋଗବ୍ୟାଧି ତ ସମସ୍ତଙ୍କର ଅଛି ।"

ଜ୍ୟୋତିଷଶାସ୍ତ୍ରବାଲା କହିଲା, "ଏଇ ଏତିକି କଥାକୁ ଏତେ ଚିନ୍ତା କାହିଁକି ? ପ୍ରତିକୂଳ ଗ୍ରହ ପାଇଁ ପୂଜା କରି ଗ୍ରହଶାନ୍ତି କରିଲେ ତ ବିପଦ କଟିଯିବ ।"

ଭଦ୍ରଲୋକ ନିଜ କନ୍ୟାର ବିବାହ କରିବାର ମନସ୍ଥ କରି ସେଠାରୁ ଗଲେ ।

କିଛିଦିନ ପରେ ଥରେ ଗୁରୁ ପାଖ ଗ୍ରାମକୁ କୌଣସି କାର୍ଯ୍ୟରେ ଯାଇଥା'ନ୍ତି । ହଠାତ୍ ଗୁରୁଙ୍କର ଛୋଟ ପୁଅକୁ ବହୁତ ଜର ଆସିଲା । ଗୁରୁପତ୍ନୀ କାତର ହୋଇ ଶିଷ୍ୟମାନଙ୍କୁ ଡାକି କହିଲେ, "ଏବେ କ'ଣ କରିବା କୁହ ।"

"ଉତ୍ତାପର ବିପରୀତ ହେଲା ଥଣ୍ଡା ପାଣି । ପିଲାକୁ ଥଣ୍ଡା ପାଣିରେ ବୁଡ଼ାଇଦେବା ।" ତର୍କଶାସ୍ତ୍ରବାଲା ପରାମର୍ଶ ଦେଲା ।

ଜ୍ୟୋତିଷଶାସ୍ତ୍ରୀ ତିଥି, ବାର, ନକ୍ଷତ୍ର ଅନୁସାରେ କେଉଁ ଗ୍ରହ ଯୋଗୁ ଏପରି ହୋଇଛି ଦେଖିବାକୁ ବହି ଧରି ବସି ପଡ଼ିଲା ।

ଚିକିତ୍ସାଶାସ୍ତ୍ରୀ ପିଲାର ନାଡ଼ି ପରୀକ୍ଷା କରି କିଛି ଔଷଧ ତିଆରି କରି ପିଲାକୁ ଖାଇବାକୁ ଦେଲା ।

ରାତିକୁ ଗୁରୁ ଘରକୁ ଫେରିଲେ । ସେତେବେଳକୁ ପିଲା ସମ୍ପୂର୍ଣ୍ଣ ସୁସ୍ଥ ହୋଇଗଲାଣି । ଗୁରୁପତ୍ନୀ ସ୍ୱାମୀଙ୍କୁ ସମସ୍ତ ଘଟଣା ବର୍ଣ୍ଣନା କରି କହିଲେ, "ଏହି ତିନିଜଣଙ୍କ ମଧ୍ୟରୁ ଜ୍ୟୋତିଷଶାସ୍ତ୍ରୀ ଓ ଚିକିତ୍ସାଶାସ୍ତ୍ରୀ ତ ଉପକାର କଲେ । ହେଲେ ତର୍କଶାସ୍ତ୍ରୀକୁ ବିଦ୍ୟାଶିକ୍ଷା ଦେଇ କି ଲାଭ ? ସେ ଓଲଟା ଜରୁଆ ପିଲା ଉପରେ ଥଣ୍ଡା ପାଣି ଢାଳିବାକୁ କହୁଥିଲା ।"

ଗୁରୁ କହିଲେ, "ମଥାରେ ପାଣି ଦେଲେ ଜର କମେ ଏହା ତ ଜଣାଶୁଣା କଥା । ଜ୍ୟୋତିଷ ଓ ବୈଦ୍ୟ କୌଣସି କାର୍ଯ୍ୟର ଦରକାର ହେଲେ ସାହାଯ୍ୟ କରନ୍ତି । କିନ୍ତୁ ତର୍କଶାସ୍ତ୍ରୀ ସର୍ବଦା ସାହାଯ୍ୟ କରନ୍ତି । କାଲି ମୁଁ ତା'ର ପରୀକ୍ଷା ନେବି ।" ତା'ପରେ ଗୁରୁ

ଓ ଗୁରୁପତ୍ନୀ ତର୍କଶାସ୍ତ୍ରୀର ପରୀକ୍ଷା ନେବା ବିଷୟରେ ଅନେକ ସମୟ ଆଲୋଚନା କଲେ ।

ପରଦିନ ଖିଆବେଳେ ସମସ୍ତେ ବସି ଭାତ ଖାଉଛନ୍ତି; ହଠାତ୍ ଗୁରୁଜୀ ଚିତ୍କାର କରି କହିଲେ ଶିମ ମଞ୍ଜି ଭାବି ମୁଁ ଗୋଟାଏ ଭୟାନକ ବିଷାକ୍ତ ପୋକ ଗିଳି ଦେଇଛି । ଏକଥା କହୁ କହୁ ସେ ପ୍ରାୟ ମୂର୍ଚ୍ଛା ହୋ'ଇ ପଡ଼ିଲେ ।

ଗୁରୁପତ୍ନୀ କହିଲେ, "ଦେଖ ତୁମ ଗୁରୁଙ୍କର କ'ଣ ହୋଇଗଲା ।"

ଏ ଘଟଣା ଦେଖି ଜ୍ୟୋତିଷ ଓ ବୈଦ୍ୟ ଦୁହେଁ ଉଠି ପଡ଼ି ଦୌଡ଼ି ଆସିଲେ ।

ଜ୍ୟୋତିଷ ଶିଷ୍ୟ ଶାସ୍ତ୍ର ଦେଖିବାକୁ ଦୌଡ଼ିଲା । ବୈଦ୍ୟ ଶିଷ୍ୟ ନାଡ଼ୀ ପରୀକ୍ଷା କଲା । କିନ୍ତୁ ତର୍କଶାସ୍ତ୍ରୀ ଆରାମରେ ବସି ଖାଉଥାଏ । ତା'ର ବ୍ୟବହାରରେ କୌଣସି ପ୍ରତିକ୍ରିୟା ନାହିଁ ।

ଗୁରୁପତ୍ନୀ ରାଗିଯାଇ କହିଲେ, "ତମେ କି ପ୍ରକାର ଶିଷ୍ୟ? ଗୁରୁ ବିଷାକ୍ତ ପୋକ ଖାଇ ବେହୋସ ହୋଇ ପଡ଼ିଛନ୍ତି । ତମେ ତାଙ୍କ ବିଷୟରେ ଚିନ୍ତା ନ କରି ଆରାମରେ ବସି ଖାଉଛ ?"

"ମା', ଗୁରୁଜୀ କୌଣସି ବିଷାକ୍ତ ପୋକ ଖାଇ ନାହାନ୍ତି । ସେ ଏତେ ମୂର୍ଖ ନୁହଁନ୍ତି ଯେ ବିଷାକ୍ତ ପୋକ ଦେଖିବା ପରେ ତାକୁ ଖାଇବେ । ଯଦି ଭୁଲ୍‌ରେ ପୋକଟା ପାଟିରେ ପଶି ଯାଇଥିବ ତେବେ ସେ ସେଇଟା ବାହାରେ ଫୋପାଡ଼ି ଦେଇଥା'ନ୍ତେ; ଗିଳି ଦେଇ ନଥା'ନ୍ତେ ।" ତର୍କଶାସ୍ତ୍ରୀ ସୁନିଶ୍ଚିତ ଭାବରେ କହିଲା ।

ତା'ର ଉତ୍ତର ଶୁଣି ଗୁରୁ ଆଖି ଖୋଲି ଉଠି ବସିଲେ ଓ ନିଜ ପତ୍ନୀଙ୍କୁ କହିଲେ, "ଏବେ ତ ବୁଝିପାରୁଛ ତର୍କଶାସ୍ତ୍ରର ବୈଶିଷ୍ଟ୍ୟ କ'ଣ ?"

ତା'ପରେ ଆଚାର୍ଯ୍ୟ ତିନି ଶିଷ୍ୟଙ୍କୁ ଶିକ୍ଷା ସମାପ୍ତ ହେବା କଥା କହି ଅତି ସନ୍ତୋଷରେ ବିଦାୟ ଦେଲେ ।



# ମନ୍ତ୍ରୀ ନିର୍ବାଚନ

ଅବନ୍ତୀ ରାଜ୍ୟର ମହାମନ୍ତ୍ରୀ ଅତ୍ୟନ୍ତ ଗୁଣୀ ଲୋକ ଥିଲେ । ହଠାତ୍ ତାଙ୍କର ମୃତ୍ୟୁ ହେଲା । ମନ୍ତ୍ରୀପଦ ପାଇଁ ତିନିଜଣ ବ୍ୟକ୍ତି ରାଜାଙ୍କ ପାଖରେ ପ୍ରାର୍ଥୀ ଥା'ନ୍ତି । ସେମାନେ ହେଲେ ରାମ ଶର୍ମା, କୃଷ୍ଣ ଶର୍ମା ଓ ଅନନ୍ତ ଶର୍ମା ।

ରାଜା ପ୍ରଥମେ ରାମ ଶର୍ମାଙ୍କୁ ଡାକି କହିଲେ, ଆମର ଦୁଇ ପଡ଼ୋଶୀ ରାଜ୍ୟରେ ରାଜା ହେଲେ ବୀରସେନ ଓ ଶକ୍ତିସେନ । ବୀରସେନ ଶକ୍ତିଶାଳୀ, ଶକ୍ତିସେନ ଦୁର୍ବଳ । ମୁଁ ଜଣକ ସହିତ ମିତ୍ରତା କଲେ ଅନ୍ୟ ଜଣେ ଶତ୍ରୁ ହେବ । କାରଣ ସେ ଦୁହେଁ ପରସ୍ପରର ଶତ୍ରୁ । ଏପରି ସ୍ଥଳେ ମୁଁ କ'ଣ କରିବା ଉଚିତ୍ ?"

"ଆପଣ ଶକ୍ତିଶାଳୀ ବୀରସେନ୍‌ଙ୍କ ସହିତ ମିତ୍ରତା କରନ୍ତୁ ।" ରାମ ଶର୍ମା କହିଲେ ।

ରାଜା ରାମ ଶର୍ମାଙ୍କୁ ବିଦା କରି କୃଷ୍ଣ ଶର୍ମାଙ୍କୁ ଡାକି ସେହି ଏକାହିଁ ପ୍ରଶ୍ନ ପଚାରିଲେ ।

କୃଷ୍ଣ ଶର୍ମା କହିଲେ, ଦୁର୍ବଳ ହେଲେ ମଧ୍ୟ ଆପଣ ଶକ୍ତିସେନଙ୍କ ସହ ମିତ୍ରତା କରନ୍ତୁ । ସେ ଅନ୍ତତଃ ଆପଣଙ୍କୁ ମାନିବେ । ଶକ୍ତିଶାଳୀ ରାଜା ବେଖାତିର୍ କରିବେ ।"

ତାପରେ ରାଜା କୃଷ୍ଣସେନ୍‌ଙ୍କୁ ବିଦାକରି ଅନନ୍ତସେନ୍‌ଙ୍କୁ ଡାକି ସେଇକଥା ପଚାରିଲେ ।

ସେ କହିଲେ, "ମହାରାଜ, ଇଏ ତ ସହଜ କଥା । ଆପଣ ବୀରସେନଙ୍କୁ କହି ପଠାନ୍ତୁ ଯେ ସେ ଶକ୍ତିସେନ୍‌ଙ୍କ ସହିତ ମିତ୍ରତା କଲେ ଆପଣ ତାଙ୍କ ସହିତ ମିତ୍ରତା କରିବେ । ଶକ୍ତି-ସେନ୍‌ଙ୍କୁ ମଧ୍ୟ କହି ପଠାନ୍ତୁ କି ସେ ବୀରସେନ୍‌ଙ୍କ ସହିତ ମିତ୍ରତା କଲେ ଆପଣ ତାଙ୍କ ସହିତ ମିତ୍ରତା କରିବେ । ଏପରି କରିବା ଦ୍ୱାରା ଦୁଇ ରାଜାଙ୍କର ଆପଣଙ୍କ ପ୍ରତି ଦ୍ୱେଷ ଭାବ ରହିବ ନାହିଁ ।"

ଅନନ୍ତ ଶର୍ମାଙ୍କ ଉତ୍ତର ଶୁଣି ରାଜା ସନ୍ତୁଷ୍ଟ ହେଲେ ଓ ତାଙ୍କୁହିଁ ରାଜା ମହାମନ୍ତ୍ରୀ ପଦରେ ନିଯୁକ୍ତ କଲେ ।





# ଅଭିଶପ୍ତ ଉପତ୍ୟକା

ଚନ୍ଦ୍ରଗିରି ରାଜ୍ୟ ଥିଲା ମର୍ତ୍ତ୍ୟପୁରୀରେ ସ୍ୱର୍ଗ ଭଳି । ରାଜା ରୁଦ୍ରସେନ ଥିଲେ ପ୍ରଜା-ବତ୍ସଳ; ରାଣୀ ଥିଲେ ଦୟାଳୁ, ପ୍ରଜାମାନେ ଥିଲେ ଖୁସିବାସିଆ ।

ଚନ୍ଦ୍ରଗିରିର ପୂର୍ବକୁ ଥିଲା ମିତ୍ରପୁରୀ ରାଜ୍ୟ । ଆୟତନରେ ଓ ସୈନ୍ୟବଳରେ ସେ ରାଜ୍ୟ ଚନ୍ଦ୍ରଗିରିଠୁଁ ବଡ଼ । କିନ୍ତୁ ସେ ରାଜ୍ୟର ରାଜ-କନ୍ୟାହିଁ ରାଜା ରୁଦ୍ରସେନଙ୍କୁ ବାହା ହୋଇଥିଲେ । ଫଳରେ ଚନ୍ଦ୍ରଗିରିର ବିପଦ ଆପଦବେଳେ ମିତ୍ରପୁରୀର ସାହାଯ୍ୟ ମିଳିବା ଥିଲା ନିଶ୍ଚିତ । ତେଣୁ ରାଜା ରୁଦ୍ରସେନ ନିଶ୍ଚିନ୍ତରେ କାଳ କାଟୁଥାନ୍ତି ।

ରାଜା ରୁଦ୍ରସେନଙ୍କର ଥିଲେ ଦୁଇ ସନ୍ତାନ । ବଡ଼ଟି କନ୍ୟା । ନାମ ସୁବର୍ଣ୍ଣା । ସାନଟି ପୁତ୍ର । ନାମ ବିଜୟ । ଏ ଦୁହିଁଙ୍କୁ ଲୋକେ ବହୁତ ଶ୍ରଦ୍ଧା କରୁଥିଲେ ।

ଚନ୍ଦ୍ରଗିରିର ଦକ୍ଷିଣକୁ ସମୁଦ୍ର । ସମୁଦ୍ର ଓ ଲୋକାଳୟ ମଝିରେ ଅରଣ୍ୟ ଓ ପର୍ବତମାଳ ।

ସେହି ଅରଣ୍ୟ ଭିତରେ ଗୋଟିଏ ଉପତ୍ୟକାରେ ଭୈରବ ଶର୍ମା ନାମକ ତାନ୍ତ୍ରିକ ରହୁଥିଲା । ସେ କୁଆଡ଼େ ମଣିଷଙ୍କୁ ଗଛ, ଗଛଙ୍କୁ ପଶୁ ଓ ପଶୁଙ୍କୁ ପକ୍ଷୀରେ ପରିଣତ କରିପାରୁଥିଲା । ସେ ଉପତ୍ୟକା ଭିତରକୁ ପଶିବାକୁ ଲୋକେ ଭୟ କରୁଥିଲେ ।

ତାନ୍ତ୍ରିକ ଭୈରବ ଶର୍ମାର ମୃତ୍ୟୁ ପରେ ତା'ର ପଟ୍ଟ ଶିଷ୍ୟ ବିକଟ ଶର୍ମା ମଧ୍ୟେ ମଧ୍ୟେ ଲୋକାଳୟକୁ, ଏପରିକି ରାଜନଅରକୁ ମଧ୍ୟ ଆସୁଥାଏ । ରାଜା ରୁଦ୍ରସେନ ତାକୁ ମୋଟା-ମୋଟି ସମ୍ମାନ ଦେଖାଉଥାନ୍ତି । କିଏ ଜାଣେ, ହୁଏତ ଲୋକଟାର କୌଣସି ଯାଦୁ ଶକ୍ତି ଥିବ!

ସେ ବର୍ଷ ଗୋଟିଏ ଉତ୍ସବ ଉପଲକ୍ଷେ ରାଜକନ୍ୟା ସୁବର୍ଣ୍ଣା ଓ ରାଜପୁତ୍ର ବିଜୟ ମାମୁଁ

ଦେବପ୍ରିୟ



ଘର ଆଡ଼େ ଚାଲିଲେ । ଘୋଡ଼ା ଚଢ଼ି ସେମାନେ ଅଳ୍ପ ସମୟ ଭିତରେ ନିଜ ଦେହରକ୍ଷୀମାନଙ୍କୁ ଟପିଗଲେ । ଦୁଇ ରାଜ୍ୟ ଭିତରେ ରାସ୍ତା ନିର୍ଜନ କିନ୍ତୁ ନିରାପଦ । ତେଣୁ ଭାଇ ଭଉଣୀ ଦୁହେଁ ହଠାତ୍ ଯାଇ ଅଜା ଆଈଙ୍କ ଆଗରେ ପହଞ୍ଚିବାରେ ଯେଉଁ ଆନନ୍ଦ ପାଇବେ, ସେଥିରେ ଦେହରକ୍ଷୀମାନେ ବା କାହିଁକି ବାଧା ଦିଅନ୍ତେ ?

ଦୁହେଁ ପରସ୍ପର ପ୍ରତିଯୋଗିତା କରି ଘୋଡ଼ା ଛୁଟାଉଥାନ୍ତି । ସେମାନେ ଅରଣ୍ୟମୟ ଅଞ୍ଚଳରେ ପହଞ୍ଚିଲେ । ସେଯାଏ ଗଛଲତା ଶୀର୍ଷରୁ କୁହୁଡ଼ି ଅପସରିଯାଇ ନଥାଏ ।

"କ୍ଷଣେ ରୋକିଯାଅ !" ଏ ଅନୁରୋଧ ଶୁଣି ସୁବର୍ଣ୍ଣା ଓ ବଜ୍ର ଘୋଡ଼ାର ଲଗାମ ଟାଣି ଧରିଲେ । ସେମାନେ ଦେଖିଲେ କୁହୁଡ଼ି ଭିତରୁ ବାହାରୁଛି ତାନ୍ତ୍ରିକ ବଙ୍କଟ ଶର୍ମା ।

"ଏ ପ୍ରସାଦ ଗ୍ରହଣ କର ।" ତାନ୍ତ୍ରିକ କହିଲା ।

ରାଜକନ୍ୟା ରାଜପୁତ୍ର ଘୋଡ଼ାରୁ ଓହ୍ଲାଇ ପଡ଼ିଲେ । ବଙ୍କଟ ଶର୍ମା ଗୋଟାଏ ଜଳ ପାତ୍ରରୁ ପାଣି ଢାଳିବାକୁ ଉଦ୍ୟତ ହୋଇ କହିଲା, "ପ୍ରଥମେ ହାତ ମୁହଁ ଧୋଇ ପକାଅ ।"

ସୁବର୍ଣ୍ଣା ଓ ବଜ୍ର ହାତ ମୁହଁ ଧୋଇଲେ ଓ ପ୍ରସାଦ ସେବନ କଲେ । "ବେଶ୍ । ଏଥର ଯାଅ । ପରେ ଭେଟିବା ।" ଏହା କହି ବଙ୍କଟ ଶର୍ମା ଚାଲିଗଲା । ସୁବର୍ଣ୍ଣା ଓ ବଜ୍ର ଘୋଡ଼ା ଉପରକୁ ଡେଇଁ ପଡ଼ିଲେ ।

ସେହି ସ୍ଥାନରୁ ରାସ୍ତା ଦୁଇଭାଗ ହୋଇ ଗୋଟିଏ ଶାଖା ଯାଇଥିଲା ମିତ୍ରପୁରୀ ଆଡ଼କୁ ; ଅନ୍ୟଟି ଯାଇଥିଲା ଗହନ ଅରଣ୍ୟ ଭିତରେ ଥିବା ଉପତ୍ୟକା ଆଡ଼େ । କହିବା ବାହୁଲ୍ୟ, ରାଜପୁତ୍ର ରାଜକନ୍ୟା ମିତ୍ରପୁରୀ ରାସ୍ତା ଧରିଲେ ।

କିଛି ସମୟ ପରେ ବଜ୍ର ହଠାତ୍ ନିଜ ଘୋଡ଼ାର ଲଗାମ୍ ଟାଣି ଧରି ସୁବର୍ଣ୍ଣାଙ୍କୁ ପଚାରିଲେ, "ଅପା ! ଆମେ କ'ଣ ଭୁଲ୍ ବାଟରେ ଆସିଲୁଁ ?"

"ମୁଁ ବି ତୋତେ ସେଇ କଥା ପଚାରିବାକୁ ଯାଉଥିଲି । କିନ୍ତୁ ଭୁଲ୍ ହେବ କେମିତି ? ସେ ଛକଠାରୁ ଆମେ ବାଆଁକୁ ଆସିଲୁଁ ତ !"

ସେମାନେ କିନ୍ତୁ ଯେଉଁ ସ୍ଥଳରେ ପହଞ୍ଚିଥିଲେ, ସେ ସ୍ଥାନ ସେମାନଙ୍କ ସମ୍ପୂର୍ଣ୍ଣ



"ତମ ଆଗରେ ହୁଏତ ଅନ୍ୟ ପନ୍ଥା ନଥିବ !" ତାନ୍ତ୍ରିକ ଦ୍ୱାର ଆଡ଼େ ମୁହାଁଇଲା ।

"ହଁ । ଆମେ ବାହାରିଯିବାକୁ ଚାହୁଁ ।" ବିଜୟ କହିଲେ ।

"ନା !" ଏହା କହି ତାନ୍ତ୍ରିକ ଚାଲିଗଲା । କବାଟ ଖୋଲିଯାଇ ପୁଣି ବନ୍ଦ ହେଲା ।

ରାଜକନ୍ୟା ଓ ରାଜପୁତ୍ର ପରସ୍ପର ଅନାଇ ସ୍ତବ୍ଧ ହୋଇ ରହିଲେ ।

"ଆମେ ତେବେ ବନ୍ଦୀ !" ଦୀର୍ଘ ନିଃଶ୍ୱାସ ଛାଡ଼ି ବିଜୟ କହିଲେ । ରାଜକନ୍ୟା ନିଜ ଓଠ କାମୁଡ଼ି ନୀରବରେ ଠିଆ ହୋଇ ରହିଲେ । ତା'ପରେ ସେ ବିପରୀତ ଦ୍ୱାର ଠେଲି ଖୋଲିଦେଲେ । ସେପଟେ ଦେଖାଗଲା ଏକ ଭୟାବହ ମୂର୍ତ୍ତି । ତାକୁ ସେ ବିକଟ ଶର୍ମା ପୂଜା କରୁଥାଏ, ଏହା ବୁଝିହେଲା ।

ସୁବର୍ଣ୍ଣା ପୁଣି ପ୍ରଧାନ ଦ୍ୱାର ପାଖକୁ ଆସି କବାଟରେ ଧକ୍‌କା ଦେଲେ ଓ ଚିତ୍କାର କରି କହିଲେ, "ଦ୍ୱାର ଖୋଲ !"

"ଚୁପ୍, ଚୁପ୍ ! ତମ ଚିତ୍କାରରେ ମୋ ରକ୍ତ ହିମ ହୋଇଯାଉଛି !" ଆନୁନାସିକ କଣ୍ଠରେ କେହି କହିଲା । ଝରକା ଦେଇ ବିଜୟ ଦେଖିଲେ, ଗୋଟିଏ ବାମନ ଦ୍ୱାର ଜଗିଛି ।

"ବନ୍ଧୁ ! ଦ୍ୱାର ଖୋଲ । ତମକୁ ପୁରସ୍କାର ମିଳିବ ।" ବିଜୟ ବାମନକୁ କହିଲେ ।

ଆକର୍ଣ୍ଣ ହସି ଝରକା ପାଖକୁ ଆସି ବାମନ କହିଲା, "ତମେ ଯଦି ସେ ଦେବୀଙ୍କ ଘରେ ଥିବା ସୁରା ପାତ୍ରଟି ଆଣିଦେବ, ତେବେ ଦ୍ୱାର ଖୋଲିଦେବି । ମୁଁ ଖାଲି ଢୋକେ ପିଇବି ।"

ବିଜୟ ତତ୍‌କ୍ଷଣାତ୍ ଯାଇ ପାତ୍ରଟି ଆଣି ଝରକା ଦେଇ ବାମନକୁ ବଢ଼ାଇ ଦେଲେ । ବାମନ ଢୋକେ ପିଇ ଉତ୍‌ଫୁଲ୍ଲ ହୋଇ କହିଲା, "ଆଃ, ଆଃ, କି ମଜାର ପାନୀୟ !"

"ଏଥର ଦ୍ୱାର ଖୋଲ ।"

"ସେ କାମଟି ଯଦି ପାରନ୍ତି, ତେବେ ନିଜେ ଭିତରକୁ ଯାଇ କ'ଣ ଏହା ପିଇ ନଥାନ୍ତି ? ଚାବି, ବୁଝ ମୋଠି ନାହିଁ ।"

"ପ୍ରତାରକ !" କ୍ରୁଦ୍ଧ ହେଲେ ରାଜପୁତ୍ର ।

"ଯେତେ ରାଗୁଛ ରାଗ, ମୁଁ କିନ୍ତୁ ରାଗିଲେ ଚଳିବ ନାହିଁ । ଧୀରସ୍ଥିର ଭାବରେ ମୋତେ

ଅପରିଚିତ ମନେ ହେଉଥିଲା । ସେମାନେ ଧିରେ ଧିରେ ଅଗ୍ରସର ହୋଇ ଗୋଟିଏ ବେଶ୍ ବଡ଼ ଧରଣର ଘର ଦେଖିଲେ । ଘୋଡ଼ା ଦୁଇଟି ଗଛରେ ବାନ୍ଧିଦେଇ ଦୁହେଁ ଘର ଭିତରକୁ ପଶିଗଲେ । କାହାକୁ ହେଲେ ବାଟ ପଚାରିବା ଥିଲା ସେମାନଙ୍କ ଉଦ୍ଦେଶ୍ୟ ।

ସେମାନେ ପଶିଯିବା ମାତ୍ରେ ଦ୍ୱାର ବନ୍ଦ ହୋଇଗଲା । କିନ୍ତୁ ସେମାନଙ୍କ ବିସ୍ମୟ ଆହୁରି ବଢ଼ିଗଲା ଯେତେବେଳେ ବିପରୀତ ଦ୍ୱାର ଦେଇ ପଶି ଆସିଲା ତାନ୍ତ୍ରିକ ବିକଟ ଶର୍ମା ।

"ଆରେ, ଆପଣ ଏତେ ଶୀଘ୍ର ଏଠି ପହଞ୍ଚିଗଲେ ! ଆମେ ବାଟ ଭୁଲ୍ କଲୁଁ ବୋଲି ମନେ ହୁଏ ।" ସୁବର୍ଣ୍ଣା କହିଲେ ।

"ନା ରାଜକନ୍ୟା । ତମେ ଯେଉଁ ବାଟରେ ଆସିଛ, ତାହା ତମକୁ ଚନ୍ଦ୍ରଗିରିର ରାଣୀ ଆସନରେ ପହଞ୍ଚାଇଦେବ ।" ଉଜ୍ଜ୍ୱଳ ହସ ଖେଳାଇ ବିକଟ ଶର୍ମା କହିଲା ।

ରାଜକନ୍ୟାଙ୍କୁ ତା' କଥା ଅସ୍ୱସ୍ତିକର ଲାଗିଲା । ସେ କହିଲେ, "ଆପଣ ଭୁଲ୍ କରୁଛନ୍ତି । ମୋର ଏଇ ସାନଭାଇଟିର ସ୍ତ୍ରୀ ହେବ ଚନ୍ଦ୍ରଗିରିର ରାଣୀ । ମୁଁ ନୁହେଁ ।"

"ହାଃ ହାଃ, ତମ ଭାଇଠୁଁ ଅଧିକ ଯୋଗ୍ୟ କେହି ରାଜା ହେବ ଓ ସେ ତମକୁ ରାଣୀ ବନାଇବ ।" ତାନ୍ତ୍ରିକର କଣ୍ଠସ୍ୱର ଶୁଭିଲା ଅତ୍ୟନ୍ତ ବିଷାକ୍ତ ।

"ରାଣୀ ବନିବା ପାଇଁ ତ ପୁଣି ମୋର ସମ୍ମତି ଆବଶ୍ୟକ !" ରାଜକନ୍ୟା କହିଲେ ।





ତମର ମୁଣ୍ଡକାଟ କରିବାକୁ ହେବ । ମୁଁ ଭଲ ମଣିଷ ବୋଲି ସବୁ କହିଦେଲି । ତମେ ତ ଆଉ ପଳେଇଯାଇ ପାରିବ ନାହିଁ !" ନିଶାରେ ଢଳ ଢଳ ବାମନ କହିଲା ।

"କିନ୍ତୁ ମୋ ଘଇର ମୁଣ୍ଡକାଟ କରିବାର କାରଣ ?" କ୍ରୋଧ ଚାପିରଖି ରାଜକନ୍ୟା ପଚାରିଲେ ।

"ବୁଝୁନା ? ଦେବୀଙ୍କ ଆଗରେ ବଳି ପଡ଼ିବେ ରାଜପୁତ୍ର । ଦେବୀ ଖୁସି ହେବେ । ତାଙ୍କ ବଳରେ ମୋ ଖାଉନ୍ଦ ବିକଟଶର୍ମା ରାଜା ହେବେ । ତମେ ହେବ ରାଣୀ । ଆଉ ମୁଁ ହେବି ସେନାପତି ! ହଁ, ଖାଉନ୍ଦ ମୋତେ କଥା ଦେଇଛନ୍ତି ।" ବାମନ ଗପିଗଲା ।

"ଓଃ, ତମେ ତେବେ ମୋ ମୁଣ୍ଡକାଟ କରିବ !" ବିଜୟ ତାକୁ ତାରିଫ୍ କଲାଭଳି କଣ୍ଠରେ କହିଲା ।

"ଆଉ କିଏ କରନ୍ତା ? ଖାଉନ୍ଦ ତ ସେତେବେଳେ ପୂଜାପାଠ କରୁଥିବେ । କାହିଁକି, ମୋ ପାରିଲାପଣରେ ତମେ ପରତେ ଯାଉନ ? ଶହେ କୋଡ଼ିଏଟା ଛେଳି କାଟି ମୋ ହାତକୁ ତାଲିମ୍ ଦେଇଛି ! ହେଃ ହେଃ ।"

"କେତେବେଳେ ମୋ ମୁଣ୍ଡକାଟ କରିବ ?"

"ଘଡ଼ିକ ଆଗରୁ ଯେଉଁ ପେଚା ଡାକ ଛାଡ଼ୁଥିଲା, ଯେତେବେଳେ ସେ ଦ୍ୱିତୀୟ ଥର ଡାକିବ । ବେଶି ଡେରି ନାହିଁମ ! ନିଜକୁ ପ୍ରସ୍ତୁତ କରିବା ପାଇଁ ମୁଁ ଏତିକ ସୁରା ପିଇଲି ।"

"ହାୟ, ଆମେ କି ଭୁଲ କଲୁଁ..." ରାଜକନ୍ୟା କହି ପକାଇଲେ ।

"ଭୁଲ୍ ନକରି ତମେ ଠିକ୍ କରିଥାନ୍ତ କେମିତି ? ପ୍ରସାଦ ପାଇବା ପୂର୍ବରୁ ତମକୁ ମୋ ଖାଉନ୍ଦ ମୁହଁ ଧୋଇବାକୁ ଯେଉଁ ଯାଦୁପାଣି ଦେଲେ, ତାହା ଆଖିରେ ଲଗିଲେ କେଇ ମିନିଟ ପର୍ଯ୍ୟନ୍ତ ବାମ ପଟର ସବୁ ଜିନିଷ ଡାହାଣ ପଟରେ ଦେଖାଯିବ ଓ ଡାହାଣ ପଟର ସବୁ ବାମରେ ଥିଲା ଭଳି ଦିଶିବ । ତମେ ଡାହାଣ ପଟକୁ ବାମ ପଟର ରାସ୍ତା ବୋଲି ଭୁଲ ନକରି କରିଥାନ୍ତ କ'ଣ ? ରାଜପୁତ୍ର ! ଏ ସୁରାପାତ୍ରଟି ଯଥାସ୍ଥାନରେ ରଖିଦିଅ ଓ ମୋତେ ଟିକିଏ ପାଣି ଆଣି ଦିଅ । ସୁରା ପିଇଲେ ମୋତେ ଶୋଷ



ଲଗେ । ଦେବୀଙ୍କ ଘର ଭିତରେ ପଶିବାବେଳେ ଦେଖିବ ଗୋଟିଏ ପାତ୍ରରେ ପାଣି ଅଛି ।"

ରାଜପୁତ୍ର ବାମନଙ୍କୁ ଖୁସି ରଖିବା ନିମନ୍ତେ ସୁରାପାତ୍ରଟି ନେଇ ରଖିଦେଲେ ଓ ପାଣି ପାତ୍ର ଆଣି ଦେଲେ । ବାମନ ଅଳ୍ପ ପିଇ କହିଲା, "ଥାଉ । ତମକୁ ହାଣିବା ଆଗରୁ ମୋତେ ହାତ ମୁହଁ ଧୋଇବାକୁ ପଡ଼ିବ । ରଖିଦିଅ ।"

ଝରକା ଦେଇ ବାମନ ପାଣି ପାତ୍ରଟି ରାଜପୁତ୍ରଙ୍କୁ ଫେରାଇ ଦେଲା । ତାକୁ ନେଇ ରଖିବା ବେଳେ ହଠାତ୍ ତାଙ୍କ ଆଖି ପଡ଼ିଲା ସେ ଲାଲ ପାତ୍ର ଉପରେ—ଯେଉଁଥିରେ ଥିଲା ଯାଦୁପାଣି । ସେ ଦେଖିଲେ, ସେଥିରେ ସେଯାଏ କିଛି ପାଣି ଅଛି । ସେ ଅନ୍ୟ ପାତ୍ରରେ ଥିବା ସମୁଦାୟ ପାଣି ତଳେ ଢାଳି ଦେଇ ଯାଦୁପାଣି ତକ ସେଥିରେ ପୁରାଇ ଦେଲେ ।

ରାଜକନ୍ୟାଙ୍କ ଅବସ୍ଥା ଏପରି, ଯେ କୌଣସି ମୁହୂର୍ତ୍ତରେ ସେ ମୂର୍ଚ୍ଛା ଯିବେ । ବିଜୟ କହିଲେ, "ଅପା! ବର୍ତ୍ତମାନ ଧୈର୍ଯ୍ୟ ଓ ସାହସ ନ ରଖିଲେ କଥା ସରିଲା ।"

"ବିଜୟ ! ଭଗବାନଙ୍କ କୃପା ଛଡ଼ା ଆମକୁ ରକ୍ଷା କରିବ କିଏ ?" କହିଲେ ସୁବର୍ଣ୍ଣା ।

ସେତିକିବେଳେ କବାଟ ଖୋଲିଗଲା । ପଶି ଆସିଲା ବିକଟଶର୍ମା । ବିଜୟ ତା' ଉପରକୁ ଲଂଫ ଦେଇ ତାକୁ କାବୁ କରିନେବେ ବୋଲି ଭାବୁଥିଲେ । କିନ୍ତୁ ତାନ୍ତ୍ରିକ କାଣିଚାଏ ଧୂଳି ତାଙ୍କ ଉପରକୁ ଫୋପାଡ଼ି ଦେଲା । ତତ୍‌କ୍ଷଣାତ୍ ବିଜୟଙ୍କ ଦେହରୁ ସବୁ ବଳ ଓ ଉତ୍ସାହ କୁଆଡ଼େ ଚାଲିଗଲା । ତାନ୍ତ୍ରିକ ବିଜୟଙ୍କୁ ଧରି ପକାଇ ସେ ମୂର୍ତ୍ତି ଆଡ଼କୁ ଅଗ୍ରସର ହେଲା । ସେ ତାଙ୍କୁ ତା' ବାମରେ ବସାଇ ପୂଜା ଆରମ୍ଭ କଲା । ବିଜୟ ଉଠି ପଡ଼ିବାକୁ ଚେଷ୍ଟା କଲେ, କିନ୍ତୁ ପାରିଲେ ନାହିଁ ।

"ରାଜପୁତ୍ର, ତମେ ଭାଗ୍ୟବାନ ଯେ ମୋ ଦେବୀ ତମକୁ ବଳି ରୂପେ ବାଛିଲେ ।" ତାନ୍ତ୍ରିକ ଗମ୍ଭୀର ସ୍ୱରରେ କହିଲା ।

"ଦୁଷ୍ଟ! ତୁ ଭାବିଛୁ ତୋର ଏ ବିଗ୍ରହରେ କୌଣସି ଦେବୀ ଅଛନ୍ତି? କେତେ ପ୍ରକାର ପୈଶାଚିକ ଶକ୍ତି ଥା'ନ୍ତି । ତୁ ସେହିପରି ଗୋଟାଏ ଶକ୍ତି କବଳରେ ପଡ଼ିଛୁ—ଅଥବା ତୁ

ସେ ଶତ୍ରୁକୁ ନିଜ କବଳକୁ ଆଣିଛୁ !" ରାଜକନ୍ୟା ପାଟିକରି କହିଲେ ।

"ମୋ ଦେବୀର ଓ ମୋର ଅପମାନ କଲେ ଅନୁତାପ କରିବ !" ତାନ୍ତ୍ରିକ ଚିତ୍କାର କରି ଏତିକି କହିସାରିଲା ବେଳକୁ ପେଟୁ ଡାକିଲା । ସେ ବାମନକୁ ନିର୍ଦ୍ଦେଶ ଦେଲା, "ବାସ୍ !"

ବାମନ ସେଠି ଥିବା ପାତ୍ରରୁ ପାଣି ନେଇ ହାତ ମୁହଁ ଧୋଇଲା ଓ ବାକି ପାଣି ଖଡ୍ଗ ଉପରେ ଢ଼ାଳି ଦେଲା । ତା'ପରେ ସେ ଖଡ୍ଗ ବୁଲାଇ ଆଣିଲା ବିଜୁଳି ବେଗରେ । ଛିଟିକି ପଡ଼ିଲା କଟାମୁଣ୍ଡ—ତାନ୍ତ୍ରିକ ବିକଟ ଶରୀରୁ !

"ହେଃ ହେଃ, ଶହେ କୋଉଏଟି ଛେଳି କାଟି ହାତ ପାକଳ କରିଥିଲିଟି !" ବାମନ ଗର୍ବରେ କହିଲା । ସେ ସେଯାଏ ବୁଝି ନଥିଲା ଯେ ଯାଦୁ ପାଣିରେ ଆଖି ଧୋଇ ସେ ଡାହାଣ ପାଖର ସବୁ ଜିନିଷକୁ ବାମରେ ଦେଖୁଥିଲା । ଫଳରେ ସେ ରାଜପୁତ୍ରଙ୍କ ବଦଳରେ ତାନ୍ତ୍ରିକର ମୁଣ୍ଡ କାଟ କରିଥିଲା ।

ତାନ୍ତ୍ରିକର ମୃତ୍ୟୁ ସଙ୍ଗେ ସଙ୍ଗେ ରାଜପୁତ୍ର ନିଜର ହୃତ ବଳ ଫେରି ପାଇଲେ । ସେ ଉଠି ପଡିଲେ । ତାଙ୍କର ଗୋଟାଏ ଧକ୍କାରେ ବାମନ ଚିତ୍‌ପଟାଙ୍ଗ୍ ମାରିଲା ।

ରାଜପୁତ୍ର ରାଜକନ୍ୟା ସେ ଘରୁ ବାହାରି ଆସିଲେ । ଘୋଡ଼ା ଦୁଇଟି ଯଥା ସ୍ଥାନରେ ଥିଲେ । ସେମାନେ ଘୋଡ଼ା ଛୁଟାଇ ଯେତେବେଳେ ନିଜ ପ୍ରାସାଦକୁ ଫେରିଲେ, ସେତେବେଳକୁ ଶତାଧିକ ସୈନିକ ତାଙ୍କ ଅନ୍ୱେଷଣରେ ବାହାରୁଥିଲେ । କାରଣ ଦୁହେଁ ମିତ୍ରପୁରରେ ପହଞ୍ଚି ନାହାନ୍ତି ଶୁଣି ରାଜା ଓ ରାଣୀଙ୍କ ଉତ୍କଣ୍ଠାର ଅନ୍ତ ନଥିଲା ।

"କଥା କ'ଣ ? ଦୁହେଁ କୁଆଡ଼େ ଥିଲ ?" ରାଜା ରାଣୀ ପଚାରିଲେ । "ସେ କାହାଣୀ ଶୁଣାଇବା । ଆଗେ ବିଜୟକୁ ଖାଇବାକୁ ପିଇବାକୁ ଦିଅ । ସେ ଆଜି ଖାଲି ସାକ୍ଷାତ୍ ପିଶାଚ କବଳରୁ ମୁକୁଳି ଆସିନାହିଁ, ତାକୁ ଶେଷ କରି ଦେଇଛି ମଧ୍ୟ ।" ରାଜକନ୍ୟା କହିଲେ ।



# ପ୍ରଶସ୍ତି

ମହାରାଜା ସଙ୍କର୍ଷଣ ବର୍ମ୍ମ ଦିନେ ରାଜସଭାରେ କହିଲେ, "ପ୍ରଜାମାନେ ନିଜ ଗୁଣଗାନ ଶୁଣି କାହିଁକି ବହୁତ ମୁଗ୍ଧ ହୋଇଯା'ନ୍ତି, ମୁଁ ବୁଝି ପାରୁନାହିଁ। ଯିଏ ମୋର ଯେତେ ଖୋସାମୋଦ କଲେ ବି ମୁଁ ସେଥିରେ ତୃପ୍ତ ହେବା ଲୋକ ନୁହେଁ। କେହି ମୋତେ ସେଭଳି ଭାବରେ ଖୁସି କରି ପାରିଲେ ମୁଁ ତାକୁ ହଜାରେ ଟଙ୍କା ପୁରସ୍କାର ଦେବି।"

ସେଦିନ ରାଜସଭାରେ ଉପସ୍ଥିତ ଥିଲେ ଜଣେ ଆଶୁକବି। ଯେତେବେଳେ ତାଙ୍କ କବିତା ବୋଲିବା ବେଳ ଆସିଲା, ଆଶୁ କବି ବୋଇଲେ :

ବୁଲିଛି ଅନେକ ଦେଶ, ଭେଟିଛି ମୁଁ ଅନେକ ରାଜନ,
କରି ତାଙ୍କ ଗୁଣଗାନ କରେ ମୁହିଁ ଧନ ଉପାର୍ଜନ
ଅବଶେଷେ ଭେଟିଲି ମୁଁ ମହାରାଜା ବର୍ମ୍ମ ସଙ୍କର୍ଷଣ
ପ୍ରଶସ୍ତି ସଭାରେ ଯା'ଙ୍କ ଟଳେ ମାତ୍ର ନାହିଁ ଆକର୍ଷଣ !

ରାଜା ଖୁସି କହିଲେ, "ଠିକ୍, ଠିକ୍ !" ତା'ପରେ ସେ ଆଶୁକବିଙ୍କୁ ଶହେଟି ଟଙ୍କା ପୁରସ୍କାର ଦେଲେ। "ମହାରାଜ, ମୋର ଗୋପନରେ ଆପଣଙ୍କୁ କିଛି କହିବାର ଅଛି।" ଆଶୁକବି କହିଲେ। ରାଜା ଗୋପନରେ କଥା କ'ଣ ବୋଲି ପଚାରିଲେ। "ମହାରାଜ, ଆପଣ ମୋତେ ବାକି ନଅଶହ ଟଙ୍କା ଦେଇ ଦିଅନ୍ତୁ।" "ଆପଣଙ୍କୁ ତ ମୁଁ ନିର୍ମଳ ପ୍ରଶସ୍ତି ଶୁଣାଇଲି। ଆପଣ ଯେ ଖୁସି ହେଲେ, ତାହା ବି ପ୍ରମାଣିତ। ସମସ୍ତଙ୍କ ଆଗରେ ମୁଁ ଆପଣଙ୍କୁ ଧରା ପକାଇବାକୁ ଚାହିଁଲି ନାହିଁ।"

ରାଜା ବୁଝିଲେ ଓ ଆଶୁକବିଙ୍କ ଦାବୀ ପୂରଣ କଲେ।





# ଶିବ ପୁରାଣ

ବଜ୍ରାଙ୍ଗର ତପସ୍ୟାରେ ବ୍ରହ୍ମା ସନ୍ତୁଷ୍ଟ ହୋଇ ପ୍ରକଟ ହେଲେ ଓ କହିଲେ, "ତୁମେ ଯାହା ବର ମାଗିବାକୁ ଚାହଁ ମାଗ ।"

"ମହାତ୍ମନ୍, ମୋର ପତ୍ନୀ ଏକ ବଳଶାଳୀ ପୁତ୍ର କାମନା କରେ ଯିଏ ଦେବତାଙ୍କ ଉପରେ ବିଜୟଲାଭ କରିପାରିବ । ତା'ର ଇଚ୍ଛା ପୂର୍ଣ୍ଣ କରନ୍ତୁ ।" ବଜ୍ରାଙ୍ଗ ହାତ ଯୋଡି କହିଲା ।

ବ୍ରହ୍ମା ପ୍ରସନ୍ନତା ସହିତ "ତଥାସ୍ତୁ" ବୋଲି କହି ଅନ୍ତର୍ଦ୍ଧାନ ହୋଇଗଲେ । ବଜ୍ରାଙ୍ଗ ଗୃହକୁ ପ୍ରତ୍ୟାବର୍ତ୍ତନ କରି ଏ ସମ୍ବାଦ ନିଜ ପତ୍ନୀକୁ ଦେଲା ।

ଯଥା ସମୟରେ ବରାଙ୍ଗୀର ପୁଅଟିଏ ଜନ୍ମ ହେଲା । ତା'ର ଜନ୍ମ ବେଳେ ପୃଥିବୀ କମ୍ପି ଉଠିଲା । ଗ୍ରହଆଡ଼େ ଅଶୁଭ ଘାତ ଦେଖାଦେଲା । ସମୁଦ୍ର ମାଡି ଆସିଲା ଓ ନାନା ପ୍ରକାର ପ୍ରାକୃତିକ ବିପର୍ଯ୍ୟୟ ଦେଖା ଦେଲା ।

ପିତାମାତା ପିଲାର ନାମ ଦେଲେ "ତାରକ" । କ୍ରମେ ସେ ବାଲ୍ୟାବସ୍ଥାରୁ ଯୌବନାବସ୍ଥା ପ୍ରାପ୍ତ କଲା । ତା'ର ଶରୀର ଥିଲା ପର୍ବତାକାର ଓ ସେ ଥିଲା ଅତ୍ୟନ୍ତ ବଳଶାଳୀ ।

ତାରକକୁ ଯିଏ ଦେଖୁଥାଏ । ସିଏ ଭୟରେ କୁଆଡେ ହେଲେ କୁଆଡ଼େ ପଳାଇବ ଠିକ୍ କରି ପାରୁ ନଥାଏ । ବଣ ଭିତରର ପଶୁପକ୍ଷୀମାନେ ତାରକର ରଡି ଶୁଣିଲେ ପ୍ରାଣମୂର୍ଚ୍ଛା ଦୌଡ଼ି ପଳାଇ ଯାଉଥାନ୍ତି । ମଣିଷମାନେ ତା' ପାଖ ପଶିବାକୁ ସାହସ କରୁ ନଥାନ୍ତି । ତାରକର



ରଡ଼ରେ ପାହାଡ଼ ପର୍ବତ ପ୍ରକମ୍ପିତ ହେଉଥାଏ। ବୃକ୍ଷଲତାରୁ ପତ୍ରମାନ ଝଡ଼ି ପଡ଼ୁଥାନ୍ତି। ତାରକ ନଦୀରେ ପଶି ସନ୍ତରଣ କଲେ ନଦୀର ଢେଉ କୂଳ ଲଂଘନ କରି ଦୁଇ ତୀରବର୍ତ୍ତୀ ଗଛଲତା ଦେହରେ ବାଡ଼େଇ ହୋଇ ଯାଉଥାନ୍ତି।

ବରଙ୍ଗୀ ଏ ବଳବାନ ପୁଅକୁ ଦେଖି ବହୁତ ଖୁସି ହେଉଥାଏ। ସେ ପୁଅ ଟିକିଏ ବଡ଼ ହେବା ପର୍ଯ୍ୟନ୍ତ ଅପେକ୍ଷା କରିଥାଏ.।

ଦିନେ ବରଙ୍ଗୀ ପୁତ୍ରକୁ ଡାକି କହିଲା, "ପୁଅ, ତୁ ଯାଇ ତପସ୍ୟା କରି ବ୍ରହ୍ମାଙ୍କୁ ସନ୍ତୁଷ୍ଟ କରିବୁ ଓ ଏପରି ବର ମାଗିବୁ ଯେଉଁଥିରେ ତୁ ତିନିଲୋକରେ ବୀରମାନଙ୍କର ଅଗ୍ରଗଣ୍ୟ ହେବୁ।"

"ମା ବ୍ରହ୍ମା କିଏ? ତପସ୍ୟା କିପରି ଭାବରେ କରିବାକୁ ହୁଏ?" କୌତୂହଳୀ ହୋଇ ତାରକ ପଚାରିଲା।

"ବାପା, ବ୍ରହ୍ମା ଅତ୍ୟନ୍ତ ଶକ୍ତିଶାଳୀ ମହାନ୍ ଦେବତା। ତାଙ୍କୁ ଭକ୍ତି ସହକାରେ ମନେ ମନେ ଧ୍ୟାନ କରିବୁ। ତାଙ୍କ କଥା ବ୍ୟତୀତ ଅନ୍ୟ କୌଣସି କଥା ଚିନ୍ତା ରାଜ୍ୟକୁ ଆଣିବୁ ନାହିଁ। ମନକୁ ବିଚଳିତ କରିବୁ ନାହିଁ। ଖରା ବର୍ଷା, ପବନ, ଏସବୁ ପ୍ରତି ଖାତିର୍ କରିବୁ ନାହିଁ।" ମା କହିଲେ।

ମା'ର କଥା ଶୁଣି ତାରକ ତପସ୍ୟା କରିବାକୁ ଗଲା। ତା'ର ତପସ୍ୟା ଥିଲା ଅତ୍ୟନ୍ତ ଉଗ୍ର। ତପସ୍ୟାର ପ୍ରତାପରେ ଚତୁର୍ଦିଗରେ ଅଗ୍ନି ଦେଖା ଦେଲା। ଦେବତାମାନେ ବ୍ରହ୍ମାଙ୍କୁ ଭେଟି କହିଲେ, "ମହାତ୍ମନ୍, ଆପଣ ତାରକର ତପସ୍ୟା ବନ୍ଦ କରନ୍ତୁ ନଚେତ୍ ତିନିଲୋକ ଜଳିଯିବ।"

ବ୍ରହ୍ମା ତାରକ ସମ୍ମୁଖରେ ଆବିର୍ଭୂତ ହୋଇ କହିଲେ, "ମୁଁ ତୋର ତପସ୍ୟାରେ ସନ୍ତୁଷ୍ଟ ହୋଇଛି। ଅଭିଳଷିତ ବର ମାଗି ନେ।"

ତାରକ ଆନନ୍ଦିତ ହୋଇ ହାତ ଯୋଡି କହିଲା, "ମହାତ୍ମନ, ଆପଣଙ୍କ ଅନୁଗ୍ରହରେହିଁ ମୋର ତପସ୍ୟା ସଫଳ ହୋଇଛି। ମୋତେ ଏଇ ବର ଦିଅନ୍ତୁ ଯେ ଶିବଙ୍କ ଅଂଶ ବ୍ୟତୀତ ମୁଁ ଆଉ କାହାରି ହାତରେ ମରିବି ନାହିଁ।"



ବ୍ରହ୍ମା ବରଦାନ କରି ଅଦୃଶ୍ୟ ହୋଇଗଲେ । ସେଠାରୁ ଫେରି ତାରକ ଗୁରୁ ଶୁକ୍ରାଚାର୍ଯ୍ୟଙ୍କୁ ଦେଖାକଲା । ତାରକର ଦିଗ୍‌ବିଜୟ ପାଇଁ ଶୁକ୍ରାଚାର୍ଯ୍ୟ ଶୁଭ ସମୟ ଗଣନା କରି କହିଲେ । ଯଥା ସମୟରେ ତାରକ ଦିଗ୍‌ବିଜୟରେ ବାହାରିଲା । ଅଳ୍ପ ସମୟ ମଧ୍ୟରେ ସେ ତ୍ରିପୁର ଜୟ କଲା । ଦେବତାମାନଙ୍କୁ ନିଜ ଅଧିକାରରେ ରଖିଲା । ତା'ପରେ ସେ ନିଜ ରାଜ୍ୟକୁ ଫେରି ଆସି ଆନନ୍ଦରେ କାଳଯାପନ କଲା ।

ଏ ସମସ୍ତ ଘଟଣା ଅତି କ୍ଷିପ୍ରଗତିରେ ଘଟିଗଲା । ଦେବତାମାନେ ଜଣେ ଯୁବକ ଅସୁର ହାତରେ ଏଭଳି ଦୟନୀୟ ଭାବରେ ପରାଜିତ ହେବେ ବୋଲି କଳ୍ପନା କରି ନଥିଲେ । ସେମାନେ ବିମୂଢ଼ ଭାବରେ ଇତସ୍ତତଃ ପଳାଇଗଲେ । ପରେ ପୁଣି ପରସ୍ପର ଡକାଡକି ହୋଇ ଏକତ୍ରିତ ହେଲେ । ତାରକର ଶକ୍ତି ସେମାନଙ୍କ ଭିତରେ ଅତ୍ୟନ୍ତ ବିସ୍ମୟ ଉତ୍ପାଦନ କରିଥାଏ । କ'ଣ କଲେ ପୁଣି ନିଜ ନିଜ ହୃତ ଗୌରବ ଫେରି ପାଇବେ । ସେ ବିଷୟରେ ସେମାନେ ବହୁତ ଆଲୋଚନା କଲେ, କିନ୍ତୁ ସହଜରେ କୌଣସି ସମାଧାନ ସେମାନଙ୍କ ମୁଣ୍ଡକୁ ଜୁଟିଲା ନାହିଁ ।

ଦିନେ ନାରଦ ଯାଇ ସେଠାରେ ପହଞ୍ଚିଲେ ତାରକ ତାଙ୍କୁ ବହୁତ ଆଦର ଅଭ୍ୟର୍ଥନା କରି ନେଇ ସିଂହାସନରେ ବସାଇଲା ଓ କହିଲା, "ଦେବର୍ଷି, ଆପଣଙ୍କ କୃପାରୁ ମୁଁ ତ୍ରିପୁର ଜୟ କରି ପାରିଛି ।"

ନାରଦ କହିଲେ, "ତାରକ, ତୁମେ ବ୍ରହ୍ମାଙ୍କଠାରୁ ଯେଉଁ ବରପ୍ରାପ୍ତ କରିଛ ସେହି ଶକ୍ତିବଳରେ ଆଜି ଏପରି ଘଟିଛି । ତେବେ ଯଦି ନିଜକୁ ପ୍ରକୃତ ଅର୍ଥରେ "ତ୍ରୈଲୋକ୍ୟାସୁର" ବୋଲାଇବାକୁ ଚାହଁ ତେବେ ବୈକୁଣ୍ଠ ଜୟ କରିବାକୁ ଯାଅ ।"

ନାରଦଙ୍କ କଥା ଶୁଣି ତାରକ ତା'ର ସୈନ୍ୟସାମନ୍ତ ନେଇ ବୈକୁଣ୍ଠ ଗଲା । ବିଷ୍ଣୁ ନିଜ ଆସନରୁ ଉଠିଆସି ତାରକ ସହିତ ମିଠା କଥା କହି ତାକୁ ସେଠାରୁ ଫେରାଇ ଦେଲେ ।



ତାରକ ଫେରି ଆସିଲା ସିନା, କିନ୍ତୁ ତା' ମନରେ ଟିକିଏ ଅସନ୍ତୋଷ ରହିଗଲା । ସତରେ, ସେ ଯଦି ବୈକୁଣ୍ଠ ଜୟ କରି ନ ପାରିଲା, ତେବେ ଆଉ କ'ଣ ହେଲା ? ସେ ତ୍ରିଭୁବନ ବିଜୟୀ ବୋଲି ଗର୍ବ କରିବାର ଅବକାଶ ରହିଲା କେଉଁଠି ?

ତାରକ ଯେତେବେଳେ ଏହି ସବୁ ଚିନ୍ତାରେ ମଗ୍ନ ରହିଥାଏ, ଦେବତାମାନେ ଦଳବଦ୍ଧ ହୋଇ ଚୁପ୍‌ଚୁପ ଯାଇ ପୁଣି ନିଜ ନିଜ ଆସନରେ ବସିଗଲେ । ତାରକ ଯେ ସେ ସମ୍ବାଦ ଜାଣି ନଥାଏ, ତାହା ନୁହେଁ, ତେବେ ସେ ସେଥିପ୍ରତି ଖାତିର୍ କରୁ ନଥାଏ । କାରଣ ଯେ କୌଣସି ମୁହୂର୍ତ୍ତରେ ସେ ଯାଇ ସେମାନଙ୍କୁ ହରାଇ ଦେଇ ପାରିବ ବୋଲି ଜାଣିଥାଏ ।

ଦିନେ କେତେଜଣ ଋଷି ବିଷ୍ଣୁଙ୍କ ନାମ ଗାଇ ବାଟରେ ଯାଉଥିବାର ତାରକ ଶୁଣିଦେଲା ଓ ବିଷ୍ଣୁଙ୍କୁ କିପରି ପରାଭୂତ କରିବ ସେ ବିଷୟ ଚିନ୍ତା କଲା ।

ଏଣେ କୈଳାସରେ ପାର୍ବତୀ ଶିବଙ୍କର ପରିଚର୍ଯ୍ୟାରେ ବ୍ୟସ୍ତ ଥା'ନ୍ତି । ପ୍ରତ୍ୟେକ ଦିନ ସଖୀମାନଙ୍କ ସହ ସେ ପୁଷ୍ପଚୟନ କରନ୍ତି । ଜଳ, ଚନ୍ଦନ, କର୍ପୂର ଧୂପ ପୁଷ୍ପ ଆଦି ଆଣି ଶିବଙ୍କର ପୂଜା କରନ୍ତି ।

ଇତିମଧ୍ୟରେ ତାରକ ଆଉଥରେ ସ୍ୱର୍ଗକୁ ଯାଇ ଇନ୍ଦ୍ରଙ୍କୁ ସିଂହାସନରୁ ତଡ଼ି ଦେଇ ସବୁ ଦେବତାଙ୍କୁ ହଇରାଣ କରିବାକୁ ଲାଗିଲା ।

ଇନ୍ଦ୍ର ଓ ଅନ୍ୟ ଦେବତାମାନେ ବ୍ରହ୍ମାଙ୍କ ନିକଟରେ ପହଞ୍ଚି ସବୁ ଦୁଃଖ ନିବେଦନ କରି କହିଲେ, "ଏବେ ତାରକର ଅତ୍ୟନ୍ତ ଗର୍ବ ହୋଇ ଯିବାରୁ ସେ ଏପରି ସବୁ କରୁଛି । ଆପଣ ଏହାର କିଛି ପ୍ରତିକାର କରନ୍ତୁ ।"

ବ୍ରହ୍ମା ତାରକ ପାଖକୁ ଯାଇ ତାକୁ ବୁଝାଇଲେ, "ତମେ ତ ତିନିଲୋକ ଉପରେ ରାଜା । ଏବେ ତମେ ନିଜ ପୁରକୁ ଫେରିଯାଅ ଓ ଇନ୍ଦ୍ରଙ୍କୁ ତାଙ୍କ ସିଂହାସନ ଫେରାଇ ଦିଅ । ସେ ତୁମ ଅଧିକାରରେ ରହିବେ ।



ତମେ ଦେବତାଙ୍କ ସହ ଶତ୍ରୁତା କାହିଁକି କରୁଛ ?"

ତାରକ ବ୍ରହ୍ମାଙ୍କ କଥା ସ୍ୱୀକାର କରିନେଲା ଓ ସ୍ୱର୍ଗପୁର ଛାଡ଼ି ଚାଲିଗଲା । ନିଜ ରାଜ୍ୟରେ ଥାଇ ସେ ତିନିଲୋକ ଶାସନ କରିବାରେ ଲାଗିଲା ।

ଇନ୍ଦ୍ର ନିଜର ସିଂହାସନ ଫେରି ପାଇଲେ ମଧ୍ୟ ତାରକର ଆଧିପତ୍ୟରେ ରହୁଥିବାରୁ ତାଙ୍କୁ ବହୁତ ଲଜ୍ଜା ହେଲା । ସେ ବୃହସ୍ପତିଙ୍କୁ ଡ଼ାକି କହିଲେ, "ଗୁରୁଦେବ, ମୁଁ ତାରକର ସେବକ ବୋଲି ଭାବିବା ବେଳକୁ ମୋତେ ବଡ଼ ଅପମାନ ହେଉଛି । ଆପଣ ତ ସର୍ବଜ୍ଞ । ତାରକର ମୃତ୍ୟୁ କି ଉପାୟରେ ହେବ କୁହନ୍ତୁ ।"

ବୃହସ୍ପତି କହିଲେ, "ବ୍ରହ୍ମାଙ୍କ ବରରେ ସେ ଏପରି ବଳଶାଳୀ ହୋଇଛି । ତେଣୁ ଚାଲ ତାଙ୍କ ପାଖକୁ ଯାଇ ଏ ବିଷୟରେ ଆଲୋଚନା କରିବା ।"

ସେମାନେ ଯାଇ ବ୍ରହ୍ମାଙ୍କ ପାଖରେ ପହଞ୍ଚିଲେ । ବ୍ରହ୍ମା କହିଲେ, "ଶିବଙ୍କ ଅଂଶରୁ ଉତ୍ପନ୍ନ ବାଳକ ଦ୍ୱାରା ତାରକର ମୃତ୍ୟୁ ହେବ । ସତୀଙ୍କ ମୃତ୍ୟୁ ପରେ ସେ ଦୁଃଖିତ ହୋଇ ଘୋର ତପସ୍ୟାରେ ମଗ୍ନ । ଏବେ ସତୀଦେବୀ ହିମବାନଙ୍କ କନ୍ୟା ପାର୍ବତୀ ରୂପରେ ଜନ୍ମ ନେଇଛନ୍ତି । ସେ ଶିବଙ୍କର ପରିଚର୍ଯ୍ୟା କରନ୍ତି । ଯଦି ତମେ-ମାନେ କୌଣସି ଉପାୟରେ ପାର୍ବତୀଙ୍କ ପ୍ରତି ଶିବଙ୍କର ପ୍ରସନ୍ନତା ଉଦ୍ରେକ କରାଇ ପାରିବ ତେବେ ଦୁହିଁଙ୍କର ବିବାହ ହେବ ଓ ଯେଉଁ ପୁତ୍ର ଜନ୍ମନେବ ସେହିଁ ତାରକକୁ ମାରି ପାରିବ ।"

ଇନ୍ଦ୍ର ଓ ଅନ୍ୟମାନେ ଏଥର ତାରକର ମୃତ୍ୟୁ ରହସ୍ୟ ଜାଣିବା ମାତ୍ରେ ଯାଇ ପହଞ୍ଚିଲେ କାମଦେବଙ୍କ ପାଖରେ । ଦେବତାମାନେ ସମସ୍ତ ଘଟଣା ବୁଝାଇ କହିବା ପରେ କାମ-ଦେବଙ୍କୁ କହିଲେ, "ହେ କାମଦେବ! ଏବେ ତମେ ଯାଇ ତୁମର ପୁଷ୍ପବାଣ ଶିବଙ୍କ ଉପରେ ନିକ୍ଷେପ କର । ନଚେତ୍ ଆଉ କିଛି ଉପାୟ ନାହିଁ ।"



କାମଦେବ ଭୟଭୀତ ହୋଇ କହିଲେ; "ଶିବଙ୍କ ଉପରେ ବାଣ ପ୍ରୟୋଗ କରିବାକୁ ମୁଁ ସାହସ କରିପାରୁ ନାହିଁ । କାରଣ ଶିବଙ୍କର କ୍ରୋଧ ସହ୍ୟ କରିବାର ଶକ୍ତି ମୋର ନାହିଁ ।"

ଏକଥା ଶୁଣି ଇନ୍ଦ୍ର ତାଙ୍କୁ ବୁଝାଇ କହିଲେ, "କାମଦେବ, ସାରା ବିଶ୍ୱବ୍ରହ୍ମାଣ୍ଡରେ ତୁମ ଶକ୍ତିରେ ବଶ ହେବନାହିଁ ଏପରି କିଏ ଅଛି ? ତୁମ ପୁଷ୍ପବାଣ ସାମନାରେ କେହି ତିଷ୍ଠି ପାରିବେ ନାହିଁ । ତା'ଛଡ଼ା ତମେ ତ ଏ ସମସ୍ତ କାର୍ଯ୍ୟ ଦେବତାଙ୍କ ପାଇଁ କରିବ ।"

ଇନ୍ଦ୍ରଙ୍କଠାରୁ ପ୍ରଶଂସା ଶୁଣି କାମଦେବ ସେ କାର୍ଯ୍ୟ କରିବାକୁ ରାଜି ହେଲେ । ସେ ତାଙ୍କ ପତ୍ନୀ ରତିଦେବୀଙ୍କ ସହିତ କୈଳାସର ସେହି ବନପ୍ରଦେଶକୁ ଗମନ କଲେ । ସେଠାରେ ସେମାନେ ଏକ ବୃକ୍ଷ ଶାଖାର ଅନ୍ତରାଳରେ ଲୁଚି ରହି ପାର୍ବତୀଙ୍କ ଆଗମନକୁ ଅପେକ୍ଷା କରି ରହିଲେ ।

ଅନେକ ସମୟ ପରେ ପାର୍ବତୀ ଆସିଲେ । କାମଦେବଙ୍କ ଉପସ୍ଥିତିରୁ ବନପ୍ରଦେଶରେ ଅପୂର୍ବ ବସନ୍ତ ଋତୁ ଦେଖା ଦେଲା । ଚାରି-ଦିଗରେ ବୃକ୍ଷଲତା ପୁଷ୍ପିତ ହୋଇ ଉଠିଲେ ଓ ମୃଦୁ ମୃଦୁ ମଳୟ ସମୀର ବହିବାକୁ ଲାଗିଲା । ପାର୍ବତୀଙ୍କ ହୃଦୟରେ ମଧୁର ଭାବର ସଞ୍ଚାର ହେଲା । ସେ ଶିବଙ୍କର ପରିଚର୍ଯ୍ୟା କରିବାରେ ଲାଗିଲେ । ଶିବ ଆଖି ଖୋଲି ପାର୍ବତୀଙ୍କ ଆଡ଼େ ଚାହିଁଲେ । ସେଦିନ ତାଙ୍କ ଆଖିରେ ପାର୍ବତୀଙ୍କ ରୂପ ଅନ୍ୟପ୍ରକାର ଦେଖା ଦେଲା । ଶିବ ପୁଣି ଚକ୍ଷୁ ବନ୍ଦ କରି ଧ୍ୟାନମଗ୍ନ ହେଲେ । ପାର୍ବତୀ ତାଙ୍କୁ ପୁଷ୍ପ ମାଲ୍ୟ ଓ ଗନ୍ଧ ଚନ୍ଦନାଦି ଅର୍ପଣ କରି ତାଙ୍କ ସମ୍ମୁଖରେ ହାତ ଯୋଡ଼ି ଚକ୍ଷୁ ମୁଦି ଠିଆ ହୋଇଥା'ନ୍ତି । ଶିବ ପୁଣି ଥରେ ଆଖି ଖୋଲିଲେ ଏବଂ ପାର୍ବତୀଙ୍କ ଐକାନ୍ତିକ ଭକ୍ତି ଓ ସେବାରେ ମୁଗ୍ଧ ହୋଇ ସେ ତାଙ୍କର ଆଡ଼େ ଚାହିଁ ରହିଥାନ୍ତି । ଏହି ସମୟରେ କାମଦେବ ତାଙ୍କ ପ୍ରତି ପୁଷ୍ପବାଣ ନିକ୍ଷେପ କଲେ ।

ପ୍ରଥମେ ଶିବ ଆଶ୍ଚର୍ଯ୍ୟ ହୋଇ ଏଣେତେଣେ ଦୃଷ୍ଟିପାତ କଲେ । ଅଚରେ ଅଦୂରରେ ଲୁଚି

ରହିଥିବା କାମଦେବଙ୍କ ଉପରେ ତାଙ୍କ ଆଖି ପଡ଼ିଲା ।

ଶିବ ହଠାତ୍ କ୍ରୁଦ୍ଧ ହୋଇ ଉଠି ପଡ଼ିଲେ ଓ କହିଲେ, "କିଏ ଏପରି ବାଣ ମୋ ଉପରକୁ ମାରିଲା ?" ସେହି ମହା କ୍ରୁଦ୍ଧଭାବ ଯୋଗୁ ତାଙ୍କ କପାଳସ୍ଥ ତୃତୀୟ ନୟନ ଖୋଲିଗଲା ଓ ସେଥିରୁ ଅଗ୍ନିବୃଷ୍ଟି ହୋଇ କାମଦେବଙ୍କୁ ଜୀବନ୍ତ ଦଗ୍‌ଧ କଲା ।

ରତିଦେବୀ ଅତ୍ୟନ୍ତ କାତର ହୋଇ ବିଳାପ କରିବାକୁ ଲାଗିଲେ । ଏପରି ଘଟଣା ଘଟିବ ବୋଲି ସେ ମୋଟେ କଳ୍ପନା କରି ନଥିଲେ । କାମଦେବଙ୍କ ଭସ୍ମୀଭୂତ ଶରୀର ଦେଖି ଦେବତାମାନେ ମଧ୍ୟ ଅତ୍ୟନ୍ତ କାତର ହୋଇ ପଡ଼ିଲେ । ସେମାନଙ୍କ ଭିତରେ ଭୟଙ୍କର କୋଳାହଳ ଏବଂ ହାହାକାର ପଡିଗଲା ।

ତା'ପରେ ଇନ୍ଦ୍ରାଦି ଦେବତାମାନେ ଯାଇ ଶିବଙ୍କୁ ସ୍ତୁତିକରି ଶାନ୍ତ କରାଇଲେ ଓ ଶିବ ନିଜର ତୃତୀୟ ନେତ୍ରର ଅଗ୍ନି ସମ୍ବରଣ କଲେ । ତା'ପରେ କାମଦେବଙ୍କ ପତ୍ନୀ ରତିଦେବୀ ଆସି ଶିବଙ୍କୁ ପ୍ରାର୍ଥନା କରି କହିଲେ, "ହେ ସଦାଶିବ, ଏହି କାର୍ଯ୍ୟରେ ମୋ ସ୍ୱାମୀଙ୍କର କିଛି ଅପରାଧ ନାହିଁ । ଦେବତାମାନେ ତାରକ ଅସୁର ଦ୍ୱାରା ଅତ୍ୟାଚାରିତ ହୋଇ ବିବ୍ରତ ହୋଇ ପଡ଼ିଛନ୍ତି । ଆପଣଙ୍କ ଅଂଶ ଜାତ ପୁତ୍ର କେବଳ ତାକୁ ମାରି ପାରିବ ବୋଲି ସେ ବର ପାଇଛି । ସେଥିପାଇଁ ପାର୍ବତୀଙ୍କ ପ୍ରତି ଆପଣଙ୍କୁ ଆକୃଷ୍ଟ କରିବା ପାଇଁ ମୋ ସ୍ୱାମୀ ଏପରି କରିଛନ୍ତି । ଏସବୁ ଦେବତାଙ୍କ ପାଇଁ । ଏବେ ସମସ୍ତିଙ୍କର ଦୋଷ କ୍ଷମା କରନ୍ତୁ ଓ ମୋର ସ୍ୱାମୀଙ୍କୁ ପୁନର୍ଜୀବିତ କରନ୍ତୁ ।" ଶିବ ସବୁ ବୁଝିଗଲେ ଓ ରତିଦେବୀଙ୍କ ପ୍ରତି ପ୍ରସନ୍ନ ହୋଇ କାମଦେବଙ୍କୁ ପୁନର୍ଜୀବନ ଦେଲେ କିନ୍ତୁ ତାଙ୍କର ଦେହ ନଥିବାରୁ ସେହିଦିନଠାରୁ ସେ 'ଅଦେହୀ' ବା ଅତନୁ ନାମରେ ଖ୍ୟାତ ହେଲେ ।





# ଲୋଭର ଫଳ

ବାଗଦାଦ୍ ସହର ନିକଟରେ ଏକ ଛୋଟ ସହରରେ ଇସ୍‌ମାଇଲ୍ ନାମରେ ଜଣେ କଂସେଇ ରହୁଥାଏ । ତା' ଦୋକାନ ପାଖରେ ଅନ୍ୟ କୌଣସି ମାଂସ ଦୋକାନ ନଥାଏ ବୋଲି ତା'ର ବ୍ୟବସାୟ ବହୁତ ଭଲରେ ଚାଲୁଥାଏ ।

ଦିନେ ତା' ଦୋକାନରେ ପହଞ୍ଚିଲା ବୁଢ଼ାଟିଏ । ଜଣା ପଡୁଥାଏ ଲୋକଟି ବିଦେଶୀ । ସେ ଇସ୍‌ମାଇଲ୍‌କୁ କହିଲା, "ଭାଇ, ମୋତେ ସେରେ ନରମ ମାଂସ ଦିଅ ।"

"ନରମ ମାଂସ ପାଇଁ ତୁମ୍ଭକୁ ରୂପା ମୋହରଟିଏ ଦେବାକୁ ହେବ ।" ଇସ୍‌ମାଇଲ୍ କହିଲା ।

"କ'ଣ, ସେରେ ମାଂସର ଦାମ ରୂପାର ମୋହର ? ଆମ ଦେଶରେ ତ ଗୋଟିଏ ରୂପା ମୋହରରେ ମେଣ୍ଢାଟିଏ କିଣାଯାଇ ପାରିବ ।"

ବୁଢ଼ା କଥା ଶୁଣି ଇସ୍‌ମାଇଲ୍ ରାଗିଯାଇ ବଡ଼ ପାଟିରେ କହିଲା, "ତମେ ଠିକ୍ ଦାମ ଦେଇ ନ ପାରିବ ତ ଏଠାରୁ ଚାଲିଯାଅ । ଯେଉଁଠି ଅଳ୍ପ ପଇସାରେ ପାଇବ ସେଠାକୁ ଯାଅ । ନ ଯିବ ତ ଏଠାରୁ ତୁମକୁ ଧକ୍କା ଦେଇ ବାହାର କରିଦେବି ।"

ଏକଥା ଶୁଣି ବୁଢ଼ା ଅଳ୍ପ ହସି ଗୋଟାଏ ରୂପା ମୋହର ଦେଇ ସେରେ ମାଂସ କିଣି ନେଲା ।

ଦ୍ୱିତୀୟ ଦିନ ବୁଢ଼ା ଆସିଲା ଓ ନ ପଚାରି ସେରେ ମାଂସ କିଣି ରୂପା ମୋହରଟିଏ ଇସ୍‌ମାଇଲ୍ ହାତକୁ ବଢ଼ାଇ ଦେଲା । ଇସ୍‌ମାଇଲ୍ ମୋହରଟି ଫେରାଇ ଦେଇ କହିଲା, "ଆଜି ମାଂସ ଦର ବଢ଼ି ଯାଇଛି । ଆଜି ସେରେ ମାଂସର ଦାମ ଦୁଇଟି ରୂପା ମୋହର ।"



ବୁଢ଼ା ଅଳ୍ପ ହସି ଅଧିକା ଗୋଟିଏ ରୂପା ମୋହର ତା' ହାତକୁ ବଢ଼ାଇ ଦେଲା ଏ ମାଂସ ନେଇ ଚାଲିଗଲା ।"

ରାତିରେ ଇସ୍‌ମାଇଲ୍ ଦେଖିଲା ତିନୋଟି ରୂପା ମୋହର ତିନୋଟି କାଠ ମୋହରରେ ପରିଣତ ହୋଇ ଯାଇଛି । ସେ ଆଶ୍ଚର୍ଯ୍ୟ ହୋଇଗଲା ।

ଇସ୍‌ମାଇଲ୍ ସକାଳଠୁଁ ଦୋକାନରେ ବସି ରାସ୍ତାକୁ ଅନାଇ ଥାଏ । ସେ ବିଦେଶୀ ବୁଢ଼ାକୁ ଦେଖିଲେ ମଜା ଚାହାର କରିଦେବ—ଏଇଆ ଥିଲା ତା' ମତଲବ୍ । କିନ୍ତୁ ଦିନଯାକ ବିତିଗଲା । ବୁଢ଼ାର ଦେଖା ମିଳିଲା ନାହିଁ । ଇସ୍‌ମାଇଲ୍ ଭୀଷଣ ହତାଶ ହେଲା । ରାତିରେ ଶୋଇ ପାରିଲା ନାହିଁ । କ୍ରୋଧରେ ତା' ଛାତି ଜଳୁଥାଏ ।

ଚତୁର୍ଥ ଦିନ ବୁଢ଼ା ପୁଣି ଦୋକାନକୁ ଆସିଲା । ଇସ୍‌ମାଇଲ୍ ତାକୁ ଦେଖିବା ମାତ୍ରେ ରାଗରେ ତା' ଉପରକୁ କୁଦିପଡ଼ି ତା' ବେକକୁ ଧରିନେଲା ଓ କହିଲା, "ଆରେ ବୁଢ଼ା, ତୋର ଏତେ ସାହସ ମୋତେ ଠକାଇଛୁ? ଆଜି ତୋର ଜୀବନ ନ ନେଇ ଛାଡ଼ୁ ନାହିଁ ।"

ବୁଢ଼ା ଟିକିଏ ବି ବିଚଳିତ ନ ହୋଇ କହିଲା, "ମୁଁ ତୁମକୁ ଠକାଇନି, ତୁମେ ମୋତେ ଠକାଇଛ ।" ବୁଢ଼ାର ଉତ୍ତର ଶୁଣି ସେ ଆହୁରି ରାଗିଯାଇ ବୁଢ଼ାକୁ ପିଟିବାକୁ ଲାଗିଲା । ବୁଢ଼ା ଚିତ୍କାର କରି କହିଲା, "ଭାଇମାନେ, ମୋତେ ରକ୍ଷାକର ମାରି ପକାଇଲା ।" ବୁଢ଼ାର ଡାକ ଶୁଣି ବହୁତ ଲୋକ ସେଠାରେ ଜମା ହୋଇଗଲେ ।

ଇସ୍‌ମାଇଲ୍ ଲୋକମାନଙ୍କୁ ଅନାଇ କହିଲା, "ଭାଇମାନେ, ଏ ବୁଢ଼ା ତିନିଦିନ ଧରି ନକଲି ମୁଦ୍ରା ଦେଇ ମେଣ୍ଢା ମାଂସ ମୋଠାରୁ ନେଇ ଯାଉଥିଲା । ଆଜିହିଁ ଏକଥା ମୋତେ ଜଣାପଡ଼ିଲା । ସିପାହୀମାନଙ୍କୁ ଡାକି ଏହାକୁ ବନ୍ଦୀ କରିବା ଉଚିତ ।

ବୁଢ଼ା କହିଲା, "ଭାଇମାନେ ଶୁଣନ୍ତୁ । ଏ ବ୍ୟକ୍ତି ଯେଉଁ ଖରାପ ମାଂସ ବିକୁଛି ତା' ବଦଳରେ ରୂପାର ମୁଦ୍ରା ଦେବା ଭଳି ବୋକା ମୁଁ ନୁହେଁ । ଏ ବ୍ୟକ୍ତି ମେଣ୍ଢା ମାଂସ ବୋଲି କହି ଯାହା ବିକୁଛି ତାହା ଯଥାର୍ଥରେ କୁକୁର ମାଂସ । ଏକଥା ମୁଁ ଜାଣେ 'ଆପଣମାନଙ୍କ



ଆଗରେ କହିଦେବ ସେହି ଭୟରେ ସେ ଓଲଟା ମୋ ଉପରେ ଦୋଷ ଦେଉଛି ।"

ଭିଡ଼ ଭିତରୁ ଜଣେ ଲୋକ ବାହାରି ଆସି ବୁଢ଼ାକୁ କହିଲା, "ତମେ ଯାହା କହୁଛ ତାହାର ସତ୍ୟତା ପ୍ରମାଣ କରି ପାରିବ ?"

"ନିଶ୍ଚୟ, ନିଶ୍ଚୟ । ଏଇପଟେ ଟିକିଏ ଆସନ୍ତୁ ଭାଇମାନେ ।" ଏକଥା କହି ସେ ଲୋକମାନଙ୍କୁ ଦୋକାନ ପଛପଟକୁ ନେଇଗଲା । ସେଠାକାର ଦୃଶ୍ୟ ଦେଖି ସେମାନେ ଆଶ୍ଚର୍ଯ୍ୟ ହୋଇଗଲେ ।

ସେଠାରେ ଥିବା ସବୁ ମେଣ୍ଢାଗୁଡ଼ିକ କୁକୁର ପାଲଟି ଯାଇଥିଲେ । ଏକଥା ଦେଖି ଇସ୍‌ମାଇଲ୍‌ର ମୁଣ୍ଡ ଘୂରିଗଲା । ବହୁ କଷ୍ଟରେ ନିଜକୁ ସମ୍ଭାଳିବା ପରେ ସେ ଲୋକମାନଙ୍କୁ କହିବାକୁ ଚାହୁଁଥିଲା ଯେ ବୁଢ଼ା ନିଶ୍ଚୟ ଜଣେ ଯାଦୁକର ।

କିନ୍ତୁ ଲୋକମାନେ ଅନ୍ୟ କିଛି ଶୁଣିବାକୁ ପ୍ରସ୍ତୁତ ନଥିଲେ । ସେମାନେ ତାକୁ ଯଥେଷ୍ଟ ପିଟିଲେ ଓ ତାକୁ ଶାସକ ଅମୀରଙ୍କ ପାଖକୁ ନେଇଗଲେ ।

ଅମୀର ସବୁକଥା ଶୁଣି ରାଗିଯାଇ ଇସ୍‌ମାଇଲ୍‌କୁ କହିଲେ, "ଆରେ ଦୁଷ୍ଟ, ମୁଁ ତୋତେ ଜାଣେ । ମୋ ଚାକର ମଧ୍ୟ ତୋରି ଦୋକାନରୁ ମାଂସ କିଣେ । ଏବେ ରହ ମୁଁ ନ୍ୟାୟଗ୍ରନ୍ଥରୁ ଦେଖି ତୋର ଦଣ୍ଡବିଧାନ କରିବି ।"

ଅମୀର ବଡ଼ ଗ୍ରନ୍ଥ ଦେଖି କହିଲେ, "ଆରେ ପାପୀ, ମୁଁ ତୋତେ ମୃତ୍ୟୁଦଣ୍ଡ ଦେଇଥା'ନ୍ତି କିନ୍ତୁ ଗ୍ରନ୍ଥରେ ସେପରି ନାହିଁ । ଏବେ ତୋର ସମସ୍ତ ସମ୍ପତ୍ତି ସୁଲ୍‌ତାନଙ୍କର ହୋଇଗଲା । ଏବେ ତୋତେ ସୈନିକମାନେ ନେଇ ଦେଶ ବାହାରେ ଛାଡ଼ି ଆସିବେ ।"

ସେହିପରି ଦଣ୍ଡବିଧାନ କରାଗଲା । ଇସ୍‌ମାଇଲ ପଶ୍ଚାତାପ କରି ଭାବିଲା, "କେବଳ ଅତି ଲୋଭରୁ ମୁଁ ଏ ଫଳ ପାଇଲି ।" ଏହିପରି ଭାବୁ ଭାବୁ ସେ ଅନ୍ୟ ଏକ ସହରରେ ପହଞ୍ଚିଲା ଓ ଭିକାରୀମାନଙ୍କ ସହିତ ଭିକ ମାଗି ଚଳୁଥାଏ । ଯେତେବେଳେ ସିପାହୀମାନେ ତାକୁ ଧରି ପିଟୁଥିଲେ ସେତେବେଳେ ତା'ର

ଆଖିଟିଏ ନଷ୍ଟ ହୋଇଯାଇଥାଏ । ଅନ୍ୟ ଭିକାରୀମାନେ ତାକୁ କହିଲେ ଯେ ଆମ ସୁଲତାନ୍ ଶୁଭ ଓ ଅଶୁଭ ସଙ୍କେତ ଉପରେ ଖୁବ୍ ବିଶ୍ୱାସ କରନ୍ତି । ସେ କଣା ଲୋକ ଦେଖିଲେ ବହୁତ ଦଣ୍ଡ ଦେବେ । ତେଣୁ ତୁମେ ତାଙ୍କ ନଗରରୁ ଦୂରରେ ରହିବାକୁ ଚେଷ୍ଟା କରିବ ।

କିଛିଦିନ ପରେ । ଦିନେ ଇସ୍‌ମାଇଲ୍ ଭିକ ମାଗିବାକୁ ରାଜପଥରେ ଯାଉଥାଏ । ହଠାତ୍ ଖୁବ୍ କୋଳାହଳ ଶୁଭିଲା । ଇସ୍‌ମାଇଲ୍ ପଚାରି ବୁଝିଲା କି ସୁଲ୍‌ତାନ୍ ଆସୁଛନ୍ତି । ତେଣୁ ସେ ତରବର ଯାଇ ଗୋଟାଏ ଖୋଲା କବାଟ ଥିବା ଘରେ ପଶିଗଲା । ଆହୁରି ଏକ ବିପଦ । ତିନିଜଣ କଦାକାର ଲୋକ ଲୁଆଡୁ ଆସି ତାକୁ ଧରି ଗର୍ଜି ଉଠି କହିଲେ, "ଆରେ ବଦମାସ୍ । ଆଜି ତୁ ଧରା ପଡ଼ିଛୁ । ତିନିଦିନ ଧରି ଆମେ ନ ଥିବାବେଳେ ଆମ ଖାଦ୍ୟ ସବୁ ଖାଇ ଦେଇ ପଳାଉଥିଲୁ । ଆଜି ଧରା ପଡ଼ିଛୁ ।" ତା'ପରେ ସେମାନେ ତାକୁ ଯଥେଷ୍ଟ ମାରି ବେହୋସ୍ କରି ଘର ବାହାରେ ପକାଇ ଦେଲେ ।

ତା'ର ଯେତେବେଳେ ହୋସ୍ ଫେରିଲା ସେ ନିଜର ଦୁର୍ଦ୍ଦଶା କଥା ଭାବି କାନ୍ଦି ପକାଇଲା ଓ ଅନ୍ୟ ଏକ ସହରକୁ ଚାଲିଗଲା । ଇତିମଧ୍ୟରେ ତା'ର ଛୋଟ ଭାଇ ସବୁ ଖବର ଶୁଣି ତା'କୁ ଖୋଜି ଖୋଜି ଆସି ସେଠାରେ ପହଞ୍ଚିଲା ଓ ନିଜ ଘରକୁ ତାକୁ ନେଇଗଲା ।

ଇସ୍‌ମାଇଲ୍ ସମସ୍ତ ଘଟଣା ତା'ର ସାନ ଭାଇକୁ ଶୁଣାଇଲା ଓ କହିଲା, "ଭାଇ ଅନବର, ମୋର ଲୋଭହିଁ ମୋର ସମସ୍ତ ଦୁର୍ଦ୍ଦଶାର ମୂଳ କାରଣ । ମୋ ପରି ତୁ ମଧ୍ୟ ମାଂସ ଦୋକାନ କରିଛୁ । ସେଇଥିରେ ଚଳୁଛୁ । କିନ୍ତୁ ଗୋଟିଏ କଥା ମନେ ରଖିଥିବୁ । ଲୋଭର ଫଳ ନିମ୍ନଗତି । ତା'ପରେ ଅନ୍ୟ ଦେଶରୁ ଆସିଥିବା ଲୋକ ଆମର ଅତିଥି । ସେମାନଙ୍କୁ କଷ୍ଟ ଦେବା ବା ଠକାଇବା ଯଥାର୍ଥରେ ପାପ । ଆଉ ମୁଁ ତା'ର ଫଳ ଭୋଗ କରୁଛି ।"



# ବନ୍ୟ ମହିଷ

ଶହେବର୍ଷ ପୂର୍ବେ ଆମେରିକାର ପୂର୍ବସୀମା ଓ ପଶ୍ଚିମ ସୀମାକୁ ଯୁକ୍ତ କରି ଏକ ରେଲ୍ ଲାଇନ୍ ତିଆରି ହେଉଥାଏ । ସେହି ବିରାଟ ଯୋଜନା କାର୍ଯ୍ୟକାରୀ କରିବା ପାଇଁ ଅସଂଖ୍ୟ ଶ୍ରମିକ କାମ କରୁଥା'ନ୍ତି । ସେମାନଙ୍କ ଆହାର ହେଲା ବନ୍ୟ ମହିଷ । ଅଠର ମାସ ଧରି ଏହି ନିର୍ମାଣ କାମ ସମୟରେ ଅସଂଖ୍ୟ ବନ୍ୟ ମହିଷ ମରା ହେଲେ । ଗଣନା କରାଯାଇ ଦେଖାଯାଇଛି ଏହି ସମୟ ମଧ୍ୟରେ ପ୍ରାୟ ଗୃଷହଜାର ମହିଷଙ୍କୁ ହତ୍ୟା କରାଯାଇଛି ।

ଅନ୍ୟ ପକ୍ଷରେ ଆମେରିକା ସରକାର ଏବେ ସେହି ବନ୍ୟ ମହିଷଙ୍କ ସୁରକ୍ଷା ସକାଶେ ଜଙ୍ଗଲ ସବୁ ଛାଡ଼ି ଦେଇଛନ୍ତି । ଏବେ ଆମେରିକାରେ ୩୦ ହଜାର ଓ କାନାଡ଼ାରେ ୨୦ ହଜାର ବନ୍ୟ ମହିଷ ଅଛନ୍ତି ।

ଭାରତରେ ବାଇସନ୍ ବା ବନ୍ୟ ମହିଷ ବହୁ ସଂଖ୍ୟାରେ ଅଛନ୍ତି । ଜଙ୍ଗଲୀ ଲୋକେ ଏହାର ମାଂସ ଖାଆନ୍ତି ଓ ଏହାର ଚର୍ମରେ ପୋଷାକ ତିଆରି କରନ୍ତି । ଏମାନଙ୍କ ମୁଣ୍ଡ ବଡ଼ ଠାଣ ଓ ଋତୁ ଅନୁଯାୟୀ ଏମାନେ ଭଲ ଚରଣ ଭୂମି ଖୋଜି ସ୍ଥାନ ପରିବର୍ତ୍ତନ କରନ୍ତି । ଏମାନେ ସାଧାରଣତଃ ଦଳ ବାନ୍ଧି ରହନ୍ତି । ଦଳ ମଧ୍ୟରେ ସାମନାରେ ଥା'ନ୍ତି ପୁରୁଷ ମହିଷ ଓ ପଛରେ ଥା'ନ୍ତି ସ୍ତ୍ରୀ ମହିଷ । ମଝିରେ ଥା'ନ୍ତି ସେମାନଙ୍କର ଛୁଆମାନେ । କିଛି ବିପଦ ପଡ଼ିଲେ ସେମାନେ ଏକ ସଙ୍ଗେ ଆତ୍ମରକ୍ଷା କରିବା ପାଇଁ ଲଢ଼ାଇ କରନ୍ତି ।

ସମୟ ଥିଲା ଯେବେ ଇଉରୋପ, ଏସିଆ ଓ ଉତ୍ତର ଆମେରିକାରେ ଏମାନେ ବହୁ ସଂଖ୍ୟାରେ ରହୁଥିଲେ । କୁହାଯାଏ ସେତେବେଳେ ଏହି ତିନି ଭୂଖଣ୍ଡ ସ୍ଥଳଭାଗ ଦ୍ୱାରା ସଂଯୁକ୍ତ ଥିଲା । କାଳକ୍ରମେ ଏହା ଜଳମଗ୍ନ ହେବାରୁ ବନ୍ୟମହିଷ ଗୁଡ଼ିକ ନିଜ ନିଜ ଦେଶର ପ୍ରକୃତି ଅନୁସାରେ ଭିନ୍ନ ଭିନ୍ନ ହୋଇଛନ୍ତି ।



# ଫଟୋ-ପରିଚୟ-ପ୍ରତିଯୋଗିତା : ପୁରସ୍କାର ଟ.୫୦

### ପୁରସ୍କୃତ ପରିଚୟୋକ୍ତି ଅଗଷ୍ଟ ୧୯୮୫ ସଂଖ୍ୟାରେ ପ୍ରକାଶ ପାଇବ



Varadaraya Nayak



Srivatsa S. Vati

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ତିନି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ଜୁନ୍ ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର। ★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ। ★ ପରିଚୟୋକ୍ତି ସହ ପ୍ରେରକର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ।

## ଏପ୍ରିଲ୍ ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : କେଉଁ ବିନ୍ଧାଣୀର କଳା କଉଶଳ ଭୁବନର ପରାଣ କରେ ମୋହିତ !

ଦ୍ୱିତୀୟ ଚିତ୍ର : ପ୍ରକୃତି କୋଳର ପ୍ରିୟ ସାଥୀ ପାଇ ମୁନିର ଅନ୍ତରେ ଆନନ୍ଦ ସ୍ରୋତ !!

ପୁରସ୍କାର ବିଜୟୀ : ଜ୍ୟୋତିରଂଜନ ମହାନ୍ତି, ରାମଚନ୍ଦ୍ରପୁର, ବସ୍ତା।

ବିଜୟୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ।

## ପ୍ରଶ୍ନମାଳାର ଉତ୍ତର

୧. ମେଗାସ୍ଥିନିସ୍। ୨. ୧୭୫୭ ରେ ନବାବ୍ ସିରାଜୁଦ୍ଦୌଲା ଓ ଇଷ୍ଟ୍ ଇଣ୍ଡିଆ କୋମ୍ପାନି ଭିତରେ ହୋଇଥିଲା। ୩. ପଞ୍ଚମ ଜର୍ଜଙ୍କ ପାଇଁ। ୪. ଚେତକ। ୫. ବ୍ରିଟେନ୍।

Printed by B. V. REDDI at Prasad Process Private Ltd., and Published by B. VISWANATHA REDDI for CHANDAMAMA CHILDREN'S TRUST FUND (Prop. of Chandamama Publications) 188, Arcot Road, Madras-600 026 (India).

# ସାଙ୍ଗ ଲାଗି ସାଙ୍ଗ ଅଧିକା ଯତ୍ନ ନିଏ ନାହିଁ କି?






# ଠିକ୍ ସେଇ ଭଳି, ହକିନ୍ସ ତିଆରି କରନ୍ତି ଅଦ୍ୱିତୀୟ ଗୁଣ-ମାନ'ର କୁକର

## ଡିଜାଇନ କରିବାଠୁ ଡେଲିଭରୀ ପର୍ଯ୍ୟନ୍ତ ପ୍ରତ୍ୟେକ ସୋପାନରେ ଅତ୍ୟଧିକ ଯତ୍ନ

ହକିନ୍ସ ଡିଜାଇନ
* ନିରାପଦ ନ ହେବା ଯାଏଁ ଢାଙ୍କୁଣୀ ଖୋଲିବାକୁ ଦିଏନା
* ସେଫ୍ଟୀ ଭଲ୍‌ଭକୁ ଅଧିକ ସୁରକ୍ଷା ଦେବା ଭଳି ସ୍ଥାନରେ ବସାଏ
* ଗ୍ୟାସ୍‌କେଟ୍‌କୁ ଦୀର୍ଘସ୍ଥାୟୀ କରାଏ
* ରାନ୍ଧଣା ଶୀଘ୍ରତର କରାଏ

ହକିନ୍ସ ଠାରେ ମାଲ୍'ର ଚୟନ ଓ ପରଖ, ନିର୍ମାଣ'ର ପ୍ରତିଟି ସୋପାନ, ପ୍ୟାକେଜିଙ୍ଗ ଠୁ ପରିବହନ ପର୍ଯ୍ୟନ୍ତ ପ୍ରତି କ୍ଷେତ୍ରରେ ଅତ୍ୟଧିକ ଧ୍ୟାନ ଦିଆଯାଏ । ତା'ପରେ ଯାଇଁ ଆପଣଙ୍କ ହାତରେ ପହଞ୍ଚେ ସର୍ବୋତ୍ତମ କୁକର !

## ମାଗଣା ସେବା ଓ ଅସଲି ଯନ୍ତ୍ରାଂଶ

କେବଳ ହକିନ୍ସ, ୧୪୭ ଟି ଅଧିକୃତ ସେବା କେନ୍ଦ୍ର ଜରିଆରେ ଆପଣଙ୍କୁ ମାଗଣା ସେବା ଯୋଗାଇଦିଏ—ଭାରତ ସାରା !

କୁକର ରିପେୟାରିଂ କାମ ହାତକୁ ନେବା, ଅସଲ ଯନ୍ତ୍ରାଂଶ ଓ ପ୍ରଶିକ୍ଷିତ ମେକାନିକଗଣ ଆପଣଙ୍କୁ ସେବା ଦେବା ଲାଗି ସର୍ବଦା ପ୍ରସ୍ତୁତ । ଅବଶ୍ୟ, ଯଦି କେବେ ଆପଣଙ୍କୁ ସେମାନଙ୍କ ଆବଶ୍ୟକତା ପଡ଼େ !

## ଅଧିକାଧିକ ମିତବ୍ୟୟିତା ଏବଂ ସୁବିଧା— [illegible] ଟି ଯାକ ମଡେଲ୍ ଦ୍ୱାରା !

୨ ରୁ ୨୨ ଲିଟର ପର୍ଯ୍ୟନ୍ତ ଦଶଟି ସାଇଜ୍ । ଛୋଟ ସାଇଜଗୁଡ଼ିକ ନବଦମ୍ପତିଙ୍କ ଲାଗି ଆଦର୍ଶ ଓ ପୁଣି ଛୁଆ କିମ୍ବା ବୟସ୍କମାନଙ୍କ ଲାଗି ବିଶେଷ ଖାଦ୍ୟ (ଡାଏଟ୍) ପ୍ରସ୍ତୁତି ଲାଗି ବି ବେଶ୍ ଉପଯୋଗୀ । ଆଉ ବଡ଼ ସାଇଜଗୁଡ଼ିକ ଯୌଥ ପରିବାର ତଥା ଉତ୍ସବ ପ୍ରସଙ୍ଗରେ ତ ବେଶ ମିତବ୍ୟୟୀ ପ୍ରମାଣିତ ହୁଏ ।

କୁକରଗୁଡ଼ିକ (୪ ରୁ ୨୨ ଲିଟର) ସେପରେଟର ବିନା କିମ୍ବା ସହିତ ମିଳେ; ଆଉ ସେପରେଟର ଯୋଗେ ଆପଣ ଦୁଇ ବା ତିନିଟି ବ୍ୟଞ୍ଜନ ଥରକେ ରାନ୍ଧିପାରନ୍ତି । କୁକରଗୁଡ଼ିକ (୫ ରୁ ୧୨ ଲିଟର) ଷ୍ଟେନ୍‌ଲେସ ଷ୍ଟିଲ ସେପରେଟର ସହିତ ବି ମିଳୁଛି ।

କୁକରଗୁଡ଼ିକ (୪ ଓ ୫ ଲିଟର) ମିଳୁଛି ନୂଆ ରେଶମି-ଧୂସରିଆ **ସାଟିଲନ୍** ଫିନିଶ୍‌ରେ, ଯାହା ଚଞ୍ଚଳ ଗରମ କରିବ ସାଥିରେ ଦୀର୍ଘସ୍ଥାୟୀ ସୁନ୍ଦରତା ଉଭୟ ଦିଏ—ନୂଆ **ସାଟିଲନ୍**® ଫିନିଶ୍ ଥିବା ହକିନ୍ସ ଫ୍ୟୁଚୁରାରେ ଅନେକାନେକ ସୁବିଧା ଅଛି । ପାଞ୍ଚ ଲିଟରବାଲା କୁକର ଷ୍ଟେନ୍‌ଲେସ ଷ୍ଟିଲରେ ବି ମିଳୁଛି ।

କୁକରଗୁଡ଼ିକ (୪ ରୁ ୮ ଲିଟର) ମିଳୁଛି ଷ୍ଟାଣ୍ଡାର୍ଡ ବେସ୍ ବା ୬.୩ ମି.ମି. ବହଳା ହେଭି ବେସ୍‌ରେ, ଯାହା ପ୍ରେସର କୁକିଙ୍ଗ ପୂର୍ବରୁ ଭାଜିବା-ସିଝେଇବା ଲାଗି ବେଶ୍ ଉପଯୋଗୀ ।

## ଫୁଲା ଫୁଲା ଇଡଲି ତିଆରି କରନ୍ତୁ ।

ହକିନ୍ସ ଇଡଲି ଷ୍ଟାଣ୍ଡ (ଅଲଗା ମିଳେ) ଦ୍ୱାରା ମୁଖରୋଚକ ଇଡଲି ଛଅ ମିନିଟରେ ପ୍ରସ୍ତୁତ କରନ୍ତୁ । ପରିବାରବର୍ଗଙ୍କୁ ଘରେ ହିଁ ସ୍ୱାଦିଷ୍ଟ, ପୋଷକ ଜଳଖିଆ ଦିଅନ୍ତୁ !

## ନିଜ ଭାଷାରେ ୪୮ ପରୀକ୍ଷିତ ବ୍ୟଞ୍ଜନ ବିଧି ।

ପ୍ରତିଟି ହକିନ୍ସ ସହିତ ନେଇପାଆନ୍ତୁ ୧୩ ଟି ଭାଷା ଭିତରୁ ନିଜ ଭାଷାରେ ଲିଖିତ 'ବ୍ୟଞ୍ଜନ ପୁସ୍ତିକା' ମାଗଣାରେ !

ବିଭିନ୍ନ ପ୍ରକାରର ସ୍ୱାସ୍ଥ୍ୟକର, ମୁଖରୋଚକ ବ୍ୟଞ୍ଜନ ରାନ୍ଧିବା ଶିଖନ୍ତୁ—ନିଜର ସମୟ ଓ ଧନ ବଞ୍ଚାନ୍ତୁ, ପରିବାରବର୍ଗଙ୍କ ପ୍ରଶଂସା ପାଆନ୍ତୁ ।

## ହାୟର-ପର୍ଚେଜ କିମ୍ବା ନଗଦ ହିସାବ

ପ୍ରାଥମିକ ଦେୟ ଟ ୧୦/- (ବାକି ପରିମାଣ ଛଅଟି ମାସିକ କିସ୍ତିରେ), ହକିନ୍ସ ଅଧିକୃତ ହାୟର-ପର୍ଚେଜ ଯୋଜନା ଅନ୍ତର୍ଗତ ଦେବାକୁ ହୁଏ । ବିକ୍ରେତାମାନଙ୍କ ଠିକଣା କିମ୍ବା ଅନ୍ୟ ବିବରଣୀ ଲାଗି ଲେଖନ୍ତୁ: ହକିନ୍ସ ଡିପାର୍ଟମେଣ୍ଟ ୧୮୨ ପୋ. ଅ. ବାକ୍ସ ୬୪୮୧, ବମ୍ବେ-୪୦୦ ୦୦୧୬ ।

ଆପଣଙ୍କର ଜଣେ ପ୍ରିୟ ସାଙ୍ଗ ହକିନ୍ସ ଠାରେ !

# ହକିନ୍ସ®

## ପ୍ରେସର କୁକର



**ସର୍ବାଧିକ ପରୀକ୍ଷିତ, ସବୁଠୁ ଶୀଘ୍ର ରାନ୍ଧିଦିଏ ସ୍ୱାଦିଷ୍ଟ ଖାଦ୍ୟ**


ଫୁଟବଲ୍ ହେଉଛି ମୋର ଅତି ପ୍ରିୟ ଖେଳ । ଖେଳ
ପଡ଼ିଆରେ ପ୍ରତିଦ୍ୱନ୍ଦୀ ଖେଳାଳୀ ଠାରୁ ବଲ୍ ଛଡ଼େଇନେଇ
ଗୋଟାକ ପରେ ଗୋଟାଏ ଗୋଲ ଦେଲାବେଳେ ଦର୍ଶକମାନଙ୍କ
ତାଳିମାଡ଼ରେ ମୋଛାତି ଫୁଲି ଉଠେ । ବାଃ... କିମଜା !
ବାପା କହନ୍ତି ଆହୁରି ଭଲ ଖେଳିବା ଲାଗି, ଭଲ ସ୍ୱାସ୍ଥ୍ୟ ଦରକାର ।
ସେଇଥିପାଇଁତ ମୁଁ ଦିନକୁ ଦୁଇଥର ହର୍ଲିକ୍ସ ପିଉଛି ।
ହର୍ଲିକ୍ସ ହେଉଛି ଏକ ସୁସ୍ୱାଦୁ ପାନୀୟ ।
ଏଥିରେ କ୍ଷୀରଯୁକ୍ତ ଦୁଧ, ମାଲଟେଡ୍ ବାର୍ଲି ଏବଂ
ଗୁନେଲି ଗହମର ସମସ୍ତ ପୋଷଣକାରି ଗୁଣ ଭରି
ରହିଛି । ଏଣୁ ସାରା ଦୁନିଆଁରେ ଲକ୍ଷ ଲକ୍ଷ ପରିବାର
୧୦୦ ବର୍ଷରୁ ଅଧିକକାଳ ହେଲା, ହର୍ଲିକ୍ସ ଉପରେ
ଭରସା ରଖି ଆସିଛନ୍ତି । ଏହା ପୁଷ୍ଟି ସାଧନର ଉତ୍ତମ
ଆଧାର ରୂପେ ବିଶ୍ୱାସ ଭାଜନ ହୋଇ ପାରିଛି ।
Horlicks
The Great Nourisher
ନୂଆ ସମୟର
ନୂଆ ରୂପ
ପୁଷ୍ଟି ଯୋଗାଇବାରେ ଅତୁଳନୀୟ



ଛୋଟିଆରୁ ଛୋଟିଆ ଘାଆରେ ବି ଧୂଳି ଲାଗିପାରେ, ଯଦ୍ଵାରା ଘାଆ ସଂକ୍ରାମିତ ହୋଇପାରେ, ଅସୁବିଧା କରିପାରେ ।

# ତୁରନ୍ତ, ବ୍ୟାଣ୍ଡ-ଏଡ୍ ଲଗାନ୍ତୁ




ବ୍ୟାଣ୍ଡ-ଏଡ୍
ସଂରକ୍ଷଣ ଉନ୍ନତତର । ଶୁଖାଏ ଦ୍ରୁତତର ।

*Johnson & Johnson*



OBM/4670 ORI

# ନୂଆ ସକାଳ ହେଲା, ନୂଆ ଖରା ପଡ଼ିଲା

## ନୂଆ ସନଲାଇଟ୍
### ଡିଟର୍ଜେଣ୍ଟ ପାଉଡର

**ଆପଣଙ୍କ ଲୁଗାପଟାରେ ଖରା'ର ଆଭା ଉଙ୍କିମାରେ !**

ଆପଣ ବି ଜଳ ଘରକୁ ନେଇ ଆସନ୍ତୁ ସନଲାଇଟ୍'ର ଝଲମଲ ଆଭା । ନୂଆ ସନଲାଇଟ ଡିଟର୍ଜେଣ୍ଟ ପାଉଡର — ଓଜନରେ ଏକଦମ ହାଲୁକା, ଅଥଚ ପ୍ରଭାବ ତା'ର ଅନେକ ଅଧିକା । ଇସ୍ପେ ଦାମିକା ପାଉଡରମାନଙ୍କ ପରି କାମିକା, ହେଲେ ଦାମ ମନେ ହୁଏ ଅନେକ କମ !

ସନଲାଇଟରେ ଅଛି ଏକ ପଦାର୍ଥ ବିଶେଷ, ଯାହା ସାଧାରଣ ପାଉଡରଗୁଡ଼ିକରେ ନ ଥାଏ ଲଗାଇଲେ, ଏହା ଲୁଗାପଟାର ତନ୍ତୁ ତନ୍ତୁରୁ ମଇଳା କାଢ଼ି ବାହାର କରେ, ଅସଲ୍ ଆଭା ଉଙ୍କିମାରେ ସେ ସବୁରେ ।

ସନଲାଇଟରେ ନା ହାତକୁ କଷ୍ଟ, ନା ହୁଏ ଲୁଗାପଟାର କ୍ଷତି । ଆଉ ଏହାର ସତେଜ ମୃଦୁ ମହ ମହକ, ଆପଣଙ୍କ ଲୁଗାପଟାରେ ଭରେ ବଢେଇବା ସୁଗନ୍ଧ ।

ତେବେ ଆସନ୍ତୁ, ଆପଣ ବି ସନଲାଇଟ୍'ର ଝଲମଲ ଆଭା ଜଳ ଜୀବନରେ ଲଗାଇବାନ୍ତୁ । ଆଜିଠାରୁ ବ୍ୟବହାର କରନ୍ତୁ ଅବଶ୍ୟ— ୭ ଟଙ୍କା ୩୫ ପଇସାରେ ମାତ୍ର ।

ମାତ୍ର
**ଟ. ୭.୩୫**
(ସ୍ଥାନୀୟ କର ଅଲଗା)




**ସୂର୍ଯ୍ୟପ୍ରଭା ସମ ଝଲମଲ କରେ ପୋଷାକ ତବ ।**

---

ହିନ୍ଦୁସ୍ଥାନ ଲିଭରଙ୍କ ଏକ ଉତ୍କୃଷ୍ଟ ଉତ୍ପାଦନ ।

OBM/2568·ORI